


(ଚାରିଗୋଟି ନାଟକ ଏକତ୍ର)

ଆନଂଦ ଚଂଦ୍ର ପହି

ଡର
(ଚାରିଗୋଟି ନାଟକ ଏକତ୍ର)

| | |
|---|---|
| ନାଟ୍ୟକାର | ଆନଂଦ ଚଂଦ୍ର ପହି |
| ପ୍ରଥମ ପ୍ରକାଶ | ୧୯୯୯ |
| ପ୍ରକାଶିକା | ଅରୁନ୍ଧତୀ ପହି |
| ଘର ନଂ | ଇ-୧୭୯, ୟୁନିଟ-୮, ଭୁବନେଶ୍ୱର-୭୫୧୦୧୨ |
| ଫୋନ ନଂ | ୪୧୮୩୯୨ |
| ପ୍ରଚ୍ଛଦ | ଆଶିଷ କୁମାର ପହି |
| ଡି.ଟି.ପି | କମ୍ପାକ୍ସ କମ୍ପୁଟର<br>ଭୁବନେଶ୍ୱର, ଫୋନ୍ : ୫୫୨୦୭୨ |
| ମୁଦ୍ରଣ | ଓଁକାର<br>ଏମ୍-୫/୨, ଆଚାର୍ଯ୍ୟବିହାର, ଭୁବନେଶ୍ୱର |
| ମୂଲ୍ୟ | ଟ ୮୫.୦୦ |

**DARA**
(Four plays together)

| | | |
|---|---|---|
| Playwright | : | **Ananda Chandra Pahi** |
| First Edition | : | 1999 |
| Published by | : | Arundhati Pahi |
| Qrs. No. | : | E-179, Unit-8, Bhubaneswar-751012 |
| Phone No. | : | 418392 |
| Cover Design | : | Ashis Kumar Pahi |
| D.T.P. | : | COMPAX COMPUTER<br>Bhubaneswar, Ph. 552072 |
| Printed by | | OMKAR<br>M-5/2, Acharya, Vihar, Bhubaneswar-13 |
| **Price** | : | **Rs. 85.00** |

ପ୍ରାପ୍ତିସ୍ଥାନ:
- ଘର ନଂ- ଇ-୧୭୯, ୟୁନିଟ-ଆଠ, ଭୁବନେଶ୍ୱର-୧୨
- ସୁବର୍ଣ୍ଣରେଖା — କଟକ ରୋଡ, ଭୁବନେଶ୍ୱର
- ଅଗ୍ରଦୂତ — ବିନୋଦ ବିହାରୀ, କଟକ
- ଗୁରୁଜୀ ବୁକ୍‌ଷ୍ଟୋର : ଝାଂଜିର ମଙ୍ଗଳା, କଟକ
- ବିଦ୍ୟାଭାରତୀ : ସିନେମା ବଜାର, କଟକ

ମୁଁ ଆଗକୁ ଆଗକୁ ବଢ଼ିବାରେ, ନୂଆ ନୂଆ ସ୍ୱପ୍ନ ଦେଖିବାରେ କି ନୂଆ କିଛି କରିବାରେ ଯିଏ ଅଧିକ ଖୁସି ହୋଇଛନ୍ତି ମୋର ସେଇ ମାମୁଁ ଶ୍ରୀଯୁକ୍ତ ବିଦ୍ୟାଧର ଧଳଙ୍କୁ ଏ ବହିଟି ଉତ୍ସର୍ଗ କରୁଛି ।

ଆନନ୍ଦ ଚନ୍ଦ୍ର ପହି

# ନାଟକ ସୂଚୀ

# ନିଜକଥା

ଅତୀତରେ ଓଡ଼ିଶାରେ ତିନି, ଚାରୋଟି ସ୍ଥାୟୀ ରଙ୍ଗ ମଞ୍ଚ ଥିଲା । ମଞ୍ଚ ନାଟକ ଲେଖିବା ପାଇଁ ପ୍ରତ୍ୟେକ ନାଟ୍ୟକାର ଉତ୍ସାହିତ ହେଉଥିଲେ । କୌଣସି ନାଟ୍ୟକାରଙ୍କର ନାଟକଟିଏ ସ୍ଥାୟୀ ମଞ୍ଚରେ ମାସାଧିକ ରାତ୍ରି ମଞ୍ଚସ୍ଥ ହେଉଥିଲା । ସାରା ଓଡ଼ିଶାରେ ସେ ନାଟକଟି ଓ ନାଟ୍ୟକାର ଜଣକ ସ୍ୱୀକୃତି ପାଇ ଯାଉଥିଲେ । ନାଟକଟି ପୁସ୍ତକ ଆକାରରେ ପ୍ରକାଶିତ ହୋଇ ଓଡ଼ିଶାର ଗାଆଁ, ସହରର ସ୍କୁଲ. କଲେଜ, ଓ କ୍ଲବରେ ବିଭିନ୍ନ ପୂଜା, ପାର୍ବଣରେ ମଞ୍ଚସ୍ଥ ହେଉଥିଲା । ନୂଆ ନାଟ୍ୟକାରଟିଏ ଉଭାରିବାରେ ସ୍ଥାୟୀ ରଙ୍ଗମଞ୍ଚର ଏ ଅବଦାନକୁ କେହି ଅସ୍ୱୀକାର କରି ପାରିବେ ନାହିଁ ।

ଏବେ କିନ୍ତୁ ନାଟକଟିଏ ଲେଖିବା ପାଇଁ କଲମ ଧରିବା ପୂର୍ବରୁ ଚିନ୍ତା କରିବାକୁ ପଡ଼ୁଛି କାହା ପାଇଁ ଅର୍ଥାତ୍ କେଉଁ ମାଧ୍ୟମ ପାଇଁ ନାଟକ ଲେଖିବି ? ମଞ୍ଚ, ବେତାର, ନା ଦୂରଦର୍ଶନ ? ଏ ତିନି ମାଧମର ନାଟକ ଆଙ୍ଗିକ ଦୃଷ୍ଟିକୋଣରୁ ପରସ୍ପରଠାରୁ ଢ଼େର ନିଆରା ।

ମଞ୍ଚ ନାଟକଟିଏ ଲେଖିଲେ ତାର ଅଭିନୟ ସମୟ ସୀମା କେତେ ହେବା ଆବଶ୍ୟକ ? ତାର ସେଟ୍ ସଂଖ୍ୟା ଏକ ନା ଏକାଧିକ ? ଏ ସମ୍ପର୍କରେ ଅନେକ କଥା କୁହାଯାଇପାରେ । ମଞ୍ଚନାଟକର ଅଭିନୟ ସମୟ ସୀମାକୁ ଦେଢ଼ ଘଣ୍ଟାରୁ ଦୁଇ ଘଣ୍ଟା ମଧ୍ୟରେ ସୀମିତ ନରଖିଲେ ଦର୍ଶକମାନଙ୍କୁ ଅଟକାଇ ରଖିବା ହୁଏତ ସମ୍ଭବ ହୋଇ ନପାରେ । ସାଂପ୍ରତିକ ସମାଜର ମଣିଷ ବିଭିନ୍ନ କ୍ରୀୟାକଳାପରେ ବ୍ୟସ୍ତ । ଏପରି କାର୍ଯ୍ୟ ବ୍ୟସ୍ତ ମଣିଷର ହାତରେ ନାଟକ ପାଇଁ ଯାଠୁ ଅଧିକ ସମୟ ନଥିବା ସ୍ୱଭାବିକ ।

ଗୋଟିଏ ସେଟ୍‌ର ନାଟକ ଅଭିନୟ ଦୃଷ୍ଟିରୁ ସହଜ ଓ ସେଥିରେ ପ୍ରଯୋଜନା ଖର୍ଚ୍ଚ ଯଥେଷ୍ଟ କମ୍ । କିନ୍ତୁ ଗୋଟିଏ ସେଟ୍‌ର ନାଟକ ଦେଖିଥିବା

ମଣିଷ ଘଣ୍ଟାଏ ପରେ କ୍ଳାନ୍ତି ଅନୁଭବ କରିବା ସ୍ୱାଭାବିକ । ଦର୍ଶକମାନଙ୍କୁ ଅଧିକ ସମୟ ବାନ୍ଧି ରଖିବା ପାଇଁ ଅନ୍ୟୂନ ଦୁଇଟି ସେଟ୍‌ର ଆବଶ୍ୟକତା ରହିଛି ।

ସବୁଠୁ ବଡ କଥା ମଞ୍ଚ ନାଟକଟିଏ ଲେଖି ସାରିବା ପରେ ଉପଯୁକ୍ତ ମଞ୍ଚଟିଏ ପାଇବା । ନାଟ୍ୟକାରଙ୍କ ପାଖରେ ନାଟକର ପାଣ୍ଡୁଲିପିଟି ଉପଯୁକ୍ତ ମଞ୍ଚ ଅଭାବରୁ ବର୍ଷ ବର୍ଷ ଧରି ପଡି ରହୁଛି । ତାହା ମଞ୍ଚସ୍ଥ ହୋଇ ପାରୁ ନାହିଁ କି ପୁସ୍ତକ ଆକାରରେ ପ୍ରକାଶ ଲାଭ କରିପାରୁ ନାହିଁ । ଏଇ ସମସ୍ୟାକୁ ସାମ୍ନା କରି ନପାରୁଥିବା ନାଟ୍ୟକାରମାନେ ମଞ୍ଚ ନାଟକ ଲେଖିବା ଉଦ୍ୟମରୁ ବିରତ ରହିବାକୁ ବାଧ ହେଉଛନ୍ତି ।

ଏବେ ମଞ୍ଚସ୍ଥ ହେଉଥିବା ଆଉ ଗୋଟିଏ ନାଟକ ହେଉଛି ପ୍ରତିଯୋଗିତା ନାଟକ । ଏ ନାଟକର ଅଭିନୟ ସମୟ ଏକ ଘଣ୍ଟାରୁ ଏକ ଘଣ୍ଟା ପନ୍ଦର ମିନିଟ୍ । ଏଗୁଡିକ ମୁଖ୍ୟତଃ ଗୋଟିଏ ସେଟ୍‌ର ନାଟକ । ଅବଶ୍ୟ ଓଡିଶାର ଚାରିପାଞ୍ଚଟି ସ୍ଥାନରେ ପ୍ରତି ବର୍ଷ ଏପରି ନାଟକ ପ୍ରତିଯୋଗିତା ଚାଲିଛି । କିନ୍ତୁ ସେ ନାଟକଗୁଡିକରେ ନାଟକ କମ୍ ପ୍ରତିଯୋଗିତା ଖୁବ୍ ବେଶି । ତଥାପି ଓଡିଆ ନଟକର ଧାରାକୁ ବଞ୍ଚାଇ ରଖିବା ଦିଗରେ ଏହିପରି ପ୍ରତିଯୋଗିତାଗୁଡିକର ଭୂମିକାକୁ ସ୍ୱୀକାର କରିବାକୁ ପଡିବ । ପ୍ରତିଯୋଗିତା ପାଇଁ ପ୍ରତିବର୍ଷ କିଛି ନୂଆ ନାଟକର ସୃଷ୍ଟି ସମ୍ଭବ ହେଉଛି ଓ ସେଥିରୁ ଅଳ୍ପ କେତୋଟି ନାଟକ ପରବର୍ତ୍ତୀ ସମୟରେ ପୁସ୍ତକ ଆକାରରେ ପ୍ରକାଶିତ ହେଉଛି ମଧ୍ୟ । ବେତାର ଓ ଦୂରଦର୍ଶନରେ ପ୍ରସାରିତ କେତେକ ନାଟକର ସମୟ ସୀମା ତିରିଶ ମିନିଟ୍ ଓ ଆଉ କେତେକର ସମୟ ସୀମା ଏକ ଘଣ୍ଟା । ପ୍ରତିଯୋଗିତା ପାଇଁ ଉଦ୍ଦିଷ୍ଟ ଅଧିକାଂଶ ନାଟକ କିଛି ଆଙ୍ଗିକ ପରିବର୍ତ୍ତନ ପରେ ବେତାର ବା ଦୂରଦର୍ଶନ ମାଧ୍ୟମରେ ପ୍ରସାରିତ ହେଉଛି । ଅବଶ୍ୟ ପ୍ରତି ସପ୍ତାହରେ ବେତାର ଓ ଦୂରଦର୍ଶନରେ ଅଳ୍ପ କେତୋଟି ନୂଆ ନାଟକ ଶୁଣିବାକୁ ବା ଦେଖିବାକୁ ମିଳୁଛି ।

କେତେକ ନାଟ୍ୟକାର କେବଳ ବେତାର ପାଇଁ କିମ୍ବା ଦୂରଦର୍ଶନ ପାଇଁ ନାଟକ ଲେଖନ୍ତି । ଆଉ କେତେକ ନାଟ୍ୟକାର ଉଭୟ ବେତାର ଓ ଦୂରଦର୍ଶନ ନାଟକ ଲେଖନ୍ତି, କିନ୍ତୁ ମଞ୍ଚ ନାଟକ ଲେଖାରେ ହାତ ଦେଉ ନାହାଁନ୍ତି । ସେହିପରି ମଞ୍ଚ ନାଟକ ଲେଖୁଥିବା କେତେକ ନାଟ୍ୟକାର ମଧ୍ୟ ବେତାର କି ଦୂରଦର୍ଶନ ନାଟକ ଲେଖିବା ପାଇଁ ଆଗ୍ରହୀ ନୁହଁନ୍ତି । ତେବେ ମଞ୍ଚନାଟକ ପାଇଁ ସଂପ୍ରତି ସୁଯୋଗ, ସୁବିଧା ସଂକୁଚିତ ହୋଇ ଯାଇଥିବାରୁ ପ୍ରତିନାଟ୍ୟକାର ମଞ୍ଚ, ବେତାର

ଓ ଦୂରଦର୍ଶନ ଏ ତିନି ମାଧମରେ ନାଟକ ଲେଖିବା ଆବଶ୍ୟକ । ଏ ତିନିମାଧ୍ୟମ ମଧ୍ୟରୁ କେବଳ ଗୋଟିଏ ମାଧମର ନାଟକ ଲେଖାରେ ନିଜକୁ ସୀମିତ ରଖିଲେ ସୁଯୋଗ ଅଭାବରୁ ବର୍ଷର ଅଧିକାଂଶ ସମୟ ହାତବାନ୍ଧି ବସିବାକୁ ପଡିବ ।

ଏହି ସବୁ କାରଣ ଦୃଷ୍ଟିରୁ ମୁଁ ପ୍ରଥମରୁ ମଞ୍ଚ, ବେତାର ଓ ଦୂରଦର୍ଶନ ତିନୋଟିଯାକ ମାଧମରେ ନାଟକ ଲେଖୁଛି । ଏ ପୁସ୍ତକରେ ସ୍ଥାନିତ ଚାରିଗୋଟି ନାଟକ ମଧ୍ୟରୁ ''ଡର'', ଓ 'କାଲି ଆଜି କାଲି' ନାଟକ ଦୁଇଟି ଉଭୟ ଦୂରଦର୍ଶନ ଓ ମଞ୍ଚ ନାଟକ । 'ଅନ୍ୟ ଅରଣ୍ୟ' ନାଟକଟି କେବଳ ଦୂରଦର୍ଶନ ନାଟକ ଏବଂ 'ଅନେକ ମୁହଁ' ନାଟକଟି କେବଳ ବେତାର ନାଟକ । କିନ୍ତୁ ଏ ଚାରୋଟିଯାକ ନାଟକକୁ ମଞ୍ଚରୂପ ଦେଇ ମୁଁ ଏ ପୁସ୍ତକରେ ସନ୍ନିବେଶିତ କରିଛି । ତେଣୁ ଏ ପୁସ୍ତକରେ ଥିବା ପ୍ରତ୍ୟେକ ନାଟକ ସଫଳ ଭାବେ ମଞ୍ଚସ୍ଥ କରାଯାଇ ପାରିବ ।

ମୁଁ ଏଇ ଅବସରରେ ଏଇ ଚାରଟିଯାକ ନାଟକର ପ୍ରଯୋଜକ, ନିର୍ଦ୍ଦେଶକ, କଳାକାରମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଆନନ୍ଦ ଚନ୍ଦ୍ର ପହି

ନିହଲ ପ୍ରସାଦ
ତା ୧୪.୯.୯୯
ଶ୍ରୀଗୁଣ୍ଡିଚା



# ଡର

## ନାଟକ ସମ୍ପର୍କରେ ସୂଚନା

| | | |
|---|---|---|
| ସେଟ ସଂଖ୍ୟା | | ଏକ |
| ନାରୀ ଚରିତ୍ର ସଂଖ୍ୟା | | ଦୁଇ |
| ଅଭିନୟ ସମୟ | : | ଏକ ଘଣ୍ଟା ତିରିଶ ମିନିଟ୍ |

ନାଟକଟି ତା ୨୬.୩.୯୮ ରଖରେ ଭୁବନେଶ୍ୱର ଦୂରଦର୍ଶନ କନ୍ଦ୍ରେର ସ୍ୱକୀୟ ପ୍ରଯୋଜନା ଭାବେ ପ୍ରସାରିତ ହୋଇଥିଲା । ନାଟକଟିର ଲୋକପ୍ରିୟତା ଦୃଷ୍ଟିରୁ ଏହା ବହୁବାର ପ୍ରସାରିତ ହୋଇଛି । ଦୂରଦର୍ଶନ ପ୍ରସାରଣରେ ଏ ନାଟକର ନାମ ରଖାଯାଇଥିଲା "ଭୟ" । ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ :-

- ❑ ବିନାୟକ ମିଶ୍ର
- ❑ ବୃନ୍ଦାବନ ବାରିକ
- ❑ ନିମାନନ୍ଦ ପାତ୍ର
- ❑ ସଦାଶିବ ରଥ
- ❑ ବିଜୟ ମହାନ୍ତି
- ❑ ଅରୁଣ ବୋଷ
- ❑ ମାନସ ଦର
- ❑ ଉମେଶ ଦାସ
- ❑ ପ୍ରସନ୍ନ ପଟ୍ଟନାୟକ
- ❑ ସରସ୍ୱତୀ ଦେବୀ
- ❑ ଅର୍ପିତା ପାତ୍ର

❑ ନିର୍ଦ୍ଦେଶନା : ସଚ୍ଚି ମହାନ୍ତି

ନାଟକର କଳେବର ବୃଦ୍ଧି କରାଯାଇ ତା ୭.୯.୯୮ ଓ ତା ୮.୯.୯୮ ରିଖ ଦୁଇ ରାତି ଭୁବନେଶ୍ୱରସ୍ଥ ରବୀନ୍ଦ୍ରମଣ୍ଡପଠାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ, ନୂଆଦିଲ୍ଲୀ ଆନୁକୂଲ୍ୟରେ "ମନନ ନାଟ୍ୟ ସଂସ୍ଥା" ଦ୍ୱାରା ମଞ୍ଚସ୍ଥ କରାଯାଇଥିଲା । ମଞ୍ଚ ପାଇଁ ଏ ନାଟକର ନାମ ରଖାଯାଇଥିଲା "ଡର" । ଏହି ନାଟକର ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ :-

- ❑ ଗୁମାନ ସିଂହ
- ❑ ଭାନୁ ପ୍ରକାଶ ଜେନା
- ❑ ଦିଲ୍ଲୀପ
- ❑ ଅନୁଜ ପଟ୍ଟନାୟକ
- ❑ ବିନୋଦ
- ❑ ସରୋଜ ପଟ୍ଟନାୟକ
- ❑ ସ୍ମୃତି ମହାନ୍ତି
- ❑ ଚିର ରଂଜନ ମିଶ୍ର
- ❑ ମୁନା
- ❑ ଉମାରାଣୀ
- ❑ କାବେରୀ ରଥ
- ❑ କୁନୁ
- ❑ ମୁନୁ

ନିର୍ଦ୍ଦେଶନା : ମନୋଜ ପଟ୍ଟନାୟକ, ସଙ୍ଗୀତ ନିର୍ଦ୍ଦେଶନା : ମନ୍ମଥ ମିଶ୍ର

# ପ୍ରଥମ ଦୃଶ୍ୟ

(ଭାନୁପ୍ରକାଶଙ୍କ ବାସଭବନ । ରବିବାର ସକାଳ ଏଗାରଟା ସମୟ । ଭାନୁପ୍ରକାଶ ହାଟସାରି ଘରକୁ ଫେରିଲେ । ପ୍ରଥମେ ଦୁଇଟା ପରିବାବ୍ୟାଗ ଥାଣି ଡ୍ରଇଁରୁମ୍‌ରେ ଥୋଇଲେ ।)

ଭାନୁ : କୁନୁ ! କୁନୁ ! ଏ କୁନୁ ! ଥାରେ କୁଆଡେ ଗଲ ସବୁ ? ଆଚ୍ଛାଲୋକ ଏମାନେ ! ଘର ଦ୍ୱାର ମେଲା । ମାଆ, ଝିଅ ଦୁହିଁ କି ଦୁହେଁ କୁଆଡେ ଚାଲି ଯାଇଛନ୍ତି ।
(ଆର ବ୍ୟାଗଟାକୁ ସ୍କୁଟରରୁ ଆଣିବାକୁ ଗଲେ ।)

ଉମା (ଅନ୍ୟଘରୁ ଡ୍ରଇଁରୁମ୍‌କୁ ଆସି ପରିବାବ୍ୟାଗ ଦୁଇଟା ଦେଖି) ଏଁ ପରିବାବ୍ୟାଗ ଦୁଇଟା ଘର ମଝିରେ ଥୋଇ ଦେଇ କୁଆଡେ ଗଲେ ?

ଭାନୁ (ଆର ବ୍ୟାଗଟା ଆଣି ଫେରିଲେ) କୁଆଡେ ଆଉ ଯିବ ଏ ବଳଦ ? ଦୁଇଟା ବ୍ୟାଗ ଥୋଇଦେଇ ଆର ବ୍ୟାଗଟା ସ୍କୁଟରରୁ ଆଣିବାକୁ ଯାଇଥିଲି । ନିଅ ଧର । ଏ ବଳଦ କୁଆଡେ ହୁଗୁଳିବାର କୁ ନାହିଁ । ଥରଟିରେ ପଡିଚି । ମେରି ଖୁଣ୍ଟ ଚାରିପଟ ଘିରି ଘିରି ହେଇ ବୁଲୁଚି, ବୁଲୁଥିବ ।

ଉମା ତୁମେ ବଳଦ ହୁଅ କି ଗଧ ହୁଅ । କିଏ ଆଉ ଅୟସରେ ଦିନ କାଟୁଚି ? ମୁଁ ଏ ଘର ଗୋଟାକର କାମ କରି କରି ନୟାନ୍ତ । (ବ୍ୟାଗ ଖୋଲିକି ଦେଖିଲେ) କ'ଣ ସବୁ ଜିନିଷ ମନେକରି ଆଣିଚ ତ ?

ଭାନୁ ଯାହା କହିଥିଲ ସବୁ ଆଣିଚି । ତମେ ଗୋଟି ଗୋଟିକି ଚନଖି ନିଅ । ଯଦି କିଛି ଊଣା ହୋଇ ଯାଇଥିବ ଏ ବଳଦ ପୁଣି ହାଟକୁ ଧପାଜିବ ।

କୁନୁ (ଘର ଭିତରୁ କହି କହି ଆସିଲା) ବାପା ! ବାପା ! କହିବି

ଗୋଟେ କଥା ?

ଉମା ଓହୋ ! ରହ, ବାପା ଆଗ ଗାଧୋଇ ପାଧୋଇ ଖାଇ ସାରନ୍ତୁ, ତା'ପରେ ଯାହା କହିବୁ ।

ଭାନୁ ଓହୋ, ତମେ ରୁହ । ପିଲାଟା କ'ଣ କହିବ, କହିବ ହଉଚି, କହୁ ।

କୁନୁ ବାପା ! ଆମ ଘର ପଛପାଖ ପଡିଆରେ ନୁହଁ, ଗୋଟେ ଲୋକ ମରିକି ପଡିଚି ।

(ଉମା ପରିବାବ୍ୟାଗ ଧରି ରୋଷେଇଘରକୁ ଗଲେ)

ଭାନୁ ଏଁ, କଣ କହିଲୁ ? ଲୋକଟେ ମରିକି ପଡିଚି ?

କୁନୁ ହଁ ବାପା ! ସତରେ ଲୋକଟେ ମରିକି ପଡିଚି ।

ଭାନୁ (ଟିକେ ବଡ ପାଟିରେ ଉମାକୁ ଶୁଣାଇ) କୁନୁ କଣ କହୁଚି ତମେ ଶୁଣିଚ ?

ଉମା (ଘର ଭିତରେ ଥାଇ) ରୁହ, ମୁଁ ପରିବା ଥୋଇ ଦେଇ ଯାଉଚି ।

କୁନୁ ତମେ ଆସ ବାପା ! (ଭାନୁଙ୍କ ହାତଧରି ଟାଣିଲା) ଛାତ ଉପରକୁ ନୁହଁ, ସେ ମଣିଷଟା ପୂରା ଦେଖା ଯାଉଛି ।

ଉମା (ପ୍ରବେଶି) କ'ଣ କହୁଚ ?

ଭାନୁ କୁନୁ କ'ଣ କହୁଚି ଗୋଟେ ଶବ କୋଉଠି ପଡିଚି ବୋଲି...

ଉମା ହଁ ଆଜି ସକାଳେ ଝରକା ଫିଟାଇବା ବେଳକୁ ଦେଖିଲି ଆମ ଘର ପଛପଟ ପଡିଆରେ କ'ଣ ଗୋଟେ ଥୁଆ ହେଇଚି ।

ଭାନୁ କୁନୁ କ'ଣ କହୁଚି ମଣିଷଟେ ପଡଚି ?

କୁନୁ : ମୁଁ କ'ଣ ମିଛି କହୁଚି କି ? ତମେ ଆସୁନ ଦେଖିବ ।

ଉମା ହଁ, ମଣିଷଟେ ପଡିଚି । ମୁଁ ଭାବିଲି ଶବ ଥୋଇ ଦେଇ ଲୋକମାନେ କାଠ ଆଣିବାକୁ ଯାଇଛନ୍ତି । ହେଲେ ଆଉ କେହି ନଆସିବାରୁ ଜଣା ପଡିଲା ମଲା ମଣିଷଟାକୁ କିଏ ଏଠି ଗଡେଇ ଦେଇ ପଳେଇଚି ।

ଭାନୁ ମଣିଷଟେ ଆମ ଘର ପଛ ପଟେ ମରିକି ପଡିଚି, ଅଥଚ ତମେ ମତେ ଏଯାଏ କହିନ କେମିତି ?

ଉମା : ମଥ, ତମେ ତ ସକାଳ ପହରୁ ହାଟକୁ ଯାଇଚ, କହିଥାନ୍ତି ଆଉ କେତେ ବେଳେ ?

କୁନୁ    ଆସ ବାପା, ଏଇ ଝରକା ପାଖକୁ ନହେଲେ ଆସ ।
(କୁନୁ ଓ ଭାନୁ ଦୁହେଁ ଝରକା ପାଖକୁ ଗଲେ ଏବଂ ଝରକା ବାଟେ ବାହାରକୁ ଚାହିଁଲେ ।)

ଭାନୁ    କାହିଁ, କୋଉଠି ?

କୁନୁ    ହେଇ ସେଇଟା ।
(ଝରକା ଫାଙ୍କରେ ହାତ ଗଳେଇ ଦୂରକୁ ଦେଖାଇ ଦେଲା)

ଭାନୁ    କାହିଁ ?

କୁନୁ    ଅନେଇଲ ବାପା ! ମୋ ଆଙ୍ଗୁଠି ସିଧା ଅନା ।

ଉମା    ଏତେ ମଣିଷଟେ ଏପଟକୁ ପଛ କରି ପଡିଚି, ତମକୁ ଦିଶୁ ନେଇଁ ?

ଭାନୁ    ହଁ, ହଁ .... ମଣିଷଟେ । ଆଚ୍ଛା ଠିକ୍ ଅଛି, ମୁଁ ଯାଇ ଦେଖେ କିଏ ମରିଚି, କେମିତି ମରିଚି ?

ଉମା    ନାଇଁ, ନାଇଁ, ଆମର ସେଠିକି ଯିବା ଦରକାର ନାହିଁ । ଏତେ ଲୋକ ଏ କଲୋନୀରେ ଅଛନ୍ତି, କେହି ଯାଉ ନାହାଁନ୍ତି, ତମେ କାଇଁକି ଯିବ ?

କୁନୁ    ବୋଉ କଥାରୁ ତମେ କ'ଣ ପାଇବ ବାପା, ଚାଲ ଆମେ ସେଠିକି ଯିବା । ପାଖରୁ ଦେଖିବା । ଲୋକଟାକୁ ଚିହ୍ନିବା ।

ଉମା    ତୁ ଚୁପ୍‌କର, କହିଲା କ'ଣ ନା ଚାଲ ଆମେ ସେଠିକି ଯିବା ।

ଭାନୁ    ଆମ ଘର ପଛପଟରେ ଗୋଟେ ଶବ ପଡିଚି, ଆମେ ନଦେଖିବା କେମିତି ? ତା ବିଷୟରେ କିଛି ନଜାଣିବା କେମିତି ?

ଉମା    ତମେ ସିନା ହାଟକୁ ଯାଇଥିଲ, କିନ୍ତୁ ଏ କଲୋନୀର ସବୁଲୋକ ନିଜ ଝରକା ଫାଙ୍କରୁ, ନହେଲେ ଛାତ ଉପରୁ ଶବଟାକୁ ଦେଖୁଛନ୍ତି । କେହି ଜଣେ ହେଲେ ଶବ ପାଖକୁ ଯାଉ ନାହାଁନ୍ତି ।

ଭାନୁ    କେହି ଯାଉ ନାହାଁନ୍ତି ବୋଲି ମୁଁ ଯିବି ନେଇଁ, ଇଏ କ'ଣ ଗୋଟେ ଯୁକ୍ତି ଯୁକ୍ତ କଥା ?

ଉମା    ମୋ କଥାତ ତୁମକୁ ଗନ୍ଧାଏ, ଏତେ ଲୋକ କାଇଁକି ସେ ଶବ ପାଖକୁ ଯାଉ ନାହାଁନ୍ତି କହିପାରିବ ?

ଭାନୁ    ମୁଁ ସେ କଥା କେମିତି କହିବି ? ମୁଁ କ'ଣ ସେମାନଙ୍କ ମନ

କଥା ଜାଣିଚି ?

ଉମା  ସେ ଲୋକଟା କେମିତି ମରିଚି ତମେ ଜାଣିଚ ?

ଭାନୁ  ଏଠି ଗୋଟେ ଲୋକ ମରିକି ପଡିଚି ବୋଲିତ ମୁଁ ଜାଣି ନଥିଲି, ଆଉ ସିଏ କେମିତି ମଲା ସେ କଥା କେମିତି ଜାଣିବି ? ସେଇ ସବୁ କଥା ଜାଣିବା ପାଇଁ ତ ମୁଁ ସେଠିକି ଯାଉଚି । ଆ କୁନୁ ! ଆ ଯିବା ।

କୁନୁ :  ଚାଲ ବାପା !

ଉମା  (ଭାନୁଙ୍କ ବାଟ ଓଗାଳି) ନା, ତମେ ସେଠିକି ଯାଇ ପାରିବନି ।

ଭାନୁ  ଉଠ, ମୋ ଆଗରୁ ଉଠ ମୁଁ ଯାଏ । ତମର ସବୁକଥାକୁ ଗୋଟେ ଅଯଥା ଡର ।

ଉମା  କିଛି ନଜାଣି ତମେ ଏଇଯୋଉ କଥାଗୁଡା କୁହ, ମୁଁ ସେଥିପାଇଁ ତୁମ ଉପରେ ବିରକ୍ତ ହୁଏ ।

ଭାନୁ  ମୁଁ ତ କିଛି ଜାଣିନାହିଁ, ତମେ ଯଦି କ'ଣ ଜାଣିଚ, ମତେ ନକହି ଏଯାଏ କାହିଁକି ଅନ୍ଧାରରେ ରଖିଛ ?

ଉମା  ଏଇ ରୋଜୀବୋଉ କହୁଥିଲେ ....

ଭାନୁ  କ'ଣ କହୁଥିଲେ ?

ଉମା  ସେ ଲୋକଟାକୁ କୁଆଡେ କିଏ ବିଷ ଦେଇକି ମାରି ଦେଇଚି । ଅଖାରେ ପୂରେଇ ଏ ପଡିଆରେ ପକେଇ ଦେଇଛି ।

ଭାନୁ  ଅଖା ?

ଉମା  ଦେଖୁନା ଖଣ୍ଡେ ଦୂରରେ ଗୋଟେ ଅଖା ପଡିଚି । ବିଲୁଆ କୁକୁର ଟଣାଟଣି କରି ଅଖାଟା ଶବ ଦିହରୁ ବାହାର କରିଦେଇଛନ୍ତି ବୋଧେ ।

ଭାନୁ  ଆଚ୍ଛା ବିଲୁଆ, କୁକୁର ସେ ଶବଟାକୁ ଖାଉ ନାହାଁନ୍ତି କାହିଁକି ?

ଉମା  ସେ ଲୋକ ବିଷ ଖାଇ ମରିଚି । ବିଲୁଆ, କୁକୁର ଖାଇଲେ କାଳେ ମରିଯିବେ ସେଇଥି ପାଇଁ ତାକୁ ଛୁଉଁ ନାହାଁନ୍ତି ।

କୁନୁ  ବାପା ? ବିଷ ଖାଇଥିବା ଲୋକକୁ ଖାଇଲେ କ'ଣ ବିଲୁଆ, କୁକୁର ମରିଯିବେ ?

ଭାନୁ :  ନା, ଠିକ୍ ସେଇଆ ନୁହଁ । ମୋର ଯାହା ମନେ ହେଉଛି....

କୁନୁ  କ'ଣ ମନେ ହେଉଚି ବାପା ?

ଭାନୁ ମୁଁ ଭାବୁଚି ଭୋର ହେବା ପରେ କିଏ ଶବଟାକୁ ଏଠି ପକେଇ ଦେଇଚି । ଆଉ ଦିନ ହେଇଯିବାରୁ ବିଲୁଆ, କୁକୁର ଆସୁ ନାହାଁନ୍ତି ।

କୁନୁ ବାପା ! ବାପା ମ ! ମୋ ସାଙ୍ଗ ମିତାଲୀ କହୁଥିଲା - ଏଇ ଯୋଉ ଲୋକଟା ମରିକି ପଡିଚି, ସିଏ କୁଆଡେ ଗୋଟେ ଭିକାରୀ । ସିଏ ଭିକ ମାଗୁ, ମାଗୁ ତାକୁ ଜର ହେଲା । ଔଷଦ ଖାଇବାକୁ ତା ପାଖରେ ପଇସା ନଥିଲା । ସିଏ ମରିଗଲା ।

ଭାନୁ ମିତାଲୀ ଏକଥା କୋଉଠୁ ଜାଣିଲା ?

ଉମା କିଏ କେତେ ପ୍ରକାର କହୁଛନ୍ତି, କାହାଠୁ ଗୋଟେ ଶୁଣିଥିବ ।

ଭାନୁ ଆଉ କ'ଣ ସବୁ କହୁଚନ୍ତି ?

ଉମା ମହାନ୍ତିବାବୁଙ୍କ ପୁଅ କହୁଥିଲା - ଏ ଲୋକଟା ଗୋଟେ ଚୋର । ରାତିରେ କାହା ଘରେ ପଶି ଚୋରି କରୁଥିଲା, ଧରା ପଡିଲା । ଲୋକମାନେ ତାକୁ ପିଟି ପିଟି ମାରି ଦେଲେ । ତାପରେ ତାକୁ ଏଠି ପକେଇ ଦେଇଛନ୍ତି ।

ଭାନୁ ଆଚ୍ଛା ଉମା ! ଗୁମାନ ବାବୁ ଘରେ ଅଛନ୍ତି ?

ଉମା ଥିଲେ ତ, ଏଇନେ ଅଛନ୍ତି କି ନାହିଁ, ମୁଁ କହି ପାରିବି ନେଇଁ ।

ଭାନୁ ମାଆ କୁନୁ !

କୁନୁ କ'ଣ ବାପା ?

ଭାନୁ ଗଲୁ ଦେଖିବୁ, ଗୁମାନ ମଉସା ତାଙ୍କ ଘରେ ଅଛନ୍ତି କି ନାହିଁ । ଯଦି ଥିବେ ତାଙ୍କୁ ଡାକି ଆଣିବୁ ।

ଉମା ନାଇଁ, ନାଇଁ ଏଇନା ଡାକନା । ଦିନ ଆସି ଏଗାରଟା ବାଜିଲାଣି । ତମେ ଗାଧୁଆ, ପାଧୁଆ କି ଖିଆ, ପିଆ ସାରିନା । ଗପିଲେ ସବୁ ଡେରି ହେଇଯିବ । ଗାଧେଇପଡି ଖାଇ ଦିଅ, ତାପରେ ତାଙ୍କୁ ଡାକିବ ।

ଭାନୁ କଲୋନୀ ପଛ ପଟରେ ଗୋଟେ ଶବ ପଡିଥିବ, ମୁଁ ଗାଧୋଇ ପାଧୋଇ ଖାଇବି ?

ଉମା ଏ କଲୋନୀରେ ଏତେଲୋକ ଅଛନ୍ତି, ସମସ୍ତେ କ'ଣ ଅଗାଧୁଆ, ଅଖିଆ, ଅପିଆ ବସି ରହିଚନ୍ତି ?

ଭାନୁ କୁନୁ! କିଲୋ ତୁ ଏ ପର୍ଯ୍ୟନ୍ତ ଯାଇନୁ ?

କୁନୁ   ଯାଉଚି ବାପା !
ଉମା   (କୁନୁକୁ ଅଟକାଇ) ନା ତୁ ଯାଇ ପାରିବୁ ନେଇଁ ।
ଭାନୁ   ମୁଁ କହୁଚି ସିଏ ଯିବ ।
ଉମା   ନା ଯିବ ନାହିଁ ।
ଭାନୁ   (କୁନୁକୁ ଟାଣି ଆଣି) ମୁଁ କହୁଚି ପରା ସିଏ ଯିବ । ଯା, ଶୀଘ୍ର ଗୁମାନ ମଉସାଙ୍କୁ ଡାକି ଆଣିବୁ । (କୁନୁର ପ୍ରସ୍ଥାନ)
ଉମା   ସମସ୍ତେ ଦେଖୁଛନ୍ତି, କେହି କିଛି କହୁନାହାଁନ୍ତି କି କରୁ ନାହାଁନ୍ତି । ଆମର କାହିଁକି ଏତେ ଗରଜ ପଡିଛି ?
ଭାନୁ   ତମେ ଏ ସହରୀ ଲୋକଙ୍କ କଥା ଜାଣିନା ଉମା ! ସମସ୍ତେ ଦେଖୁଥିବେ, ଦେଖି ନଦେଖିବାର ଅଭିନୟ କରି ଆଡେଇ ହୋଇ ଚାଲି ଯାଉଥିବେ । ଜଣେ କିଏ ଆରମ୍ଭ କଲେ ସମସ୍ତେ ଗୋଟି ଗୋଟିକି ଆସି ଭିଡ ଜମାଇବେ । ଆଉ ସେ ଭିଡ ଭାଙ୍ଗିବାକୁ ହୁଏତ ପୋଲିସ୍‌ର ସାହାଯ୍ୟ ନେବାକୁ ପଡିବ ।
ଉମା   ନାଇଁ ଆମର କିଛି କରିବା ଦରକାର ନାହିଁ ।
ଭାନୁ   ନାଇଁ, ମୁଁ କିଛି କରିବି ନେଇଁ । କେବଳ ଗୋଟେ ଦରଖାସ୍ତ ଲେଖି ମୁନିସିପାଲ୍‌ଟିକି ଜଣାଇଁ ଦେବି ।
ଉମା   ଭଲ, ମନ୍ଦ କ'ଣ ହେବ, ତମେ ଏକୁଟିଆ କାଇଁକି ଜଣେଇବ ?
ଭାନୁ   ସେଇଥି ପାଇଁ ତ ଗୁମାନବାବୁଙ୍କୁ ଡକାଇଛି ।
(ଗୁମାନବାବୁ ଓ କୁନୁ ପ୍ରବେଶ କଲେ) .
ହେଇତ ଗୁମାନବାବୁ ଆସିଲେଣି । ଆସନ୍ତୁ, ଆସନ୍ତୁ ଗୁମାନବାବୁ ! ବସନ୍ତୁ । ଉମା ! ଯାଆ, ଦି' କପ୍ ଚା' କରି ଆଣ ।
ଉମା   ଆଣୁଚି । (ପ୍ରସ୍ଥାନ)
ଗୁମାନ   ମତେ କ'ଣ ପାଇଁ ଡକାଇଲେ ଭାନୁବାବୁ ?
ଭାନୁ   କୁନୁ ! ତୁ ଭିତରକୁ ଯା । (କୁନୁର ପ୍ରସ୍ଥାନ)
ଏଇ ଆମ କଲୋନୀ ପଛପଟେ ଗୋଟେ ଶବ ପଡିଛି । ଆପଣ ଦେଖିଲେଣି ?
ଗୁମାନ   ହଁ । ଏ ବଦମାସ ଲୋକଗୁଡାଙ୍କର ମୋଟେ ସିଭିକ୍‌ସେନ୍ସ ନାହିଁ । ଆମେ ଏତେ ଲୋକ ପିଲାଛୁଆ ଧରି ଏଠି ରହୁଛେ,

କଲୋନୀର ଏତେ ପାଖରେ ଶବଟାକୁ ପକାଉଛନ୍ତି ।

ଭାନୁ ମୁଁ ସେଇଥି ପାଇଁ ଆପଣଙ୍କୁ ଡାକିଲି । କିଛି ଗୋଟେ ନ କଲେ ଚଳିହେବ ନାହିଁ । ଆଜି ଭୋରୁ ଏ ଶବ ପଡିଛି । ଆସନ୍ତା କାଲିଠୁ ପଚିକି ଦୁର୍ଗନ୍ଧ ହେବ । ଖରାଦିନ, ଦକ୍ଷିଣା ପବନ । ପଚା ମୁର୍ଦ୍ଦାର ଗନ୍ଧ ଏଇ ଆଡକୁ ପିଟିବ ।

ଗୁମାନ ହୁଁ, ଗନ୍ଧତ ହେବ । କ'ଣ କରିବା କୁହନ୍ତୁ ।

ଭାନୁ ତୁରନ୍ତ ମୁନିସିପାଲ୍‌ଟିକୁ ଜଣାଇ ଦେଲେ, ସିଏ ମୁର୍ଦ୍ଦାରଟା ଉଠେଇ ନେବ । ସବୁ ଝମେଲା ତୁଟିଯିବ ।

ଗୁମାନ (ନୀରବ)

ଭାନୁ ଭାବୁଛନ୍ତି କ'ଣ ? ରାସ୍ତାରେ ଅଳିଆ ଜମାହେଲେ, ଗୋରୁଗାଈ, କୁକୁର ବିଲେଇ ମରିପଡିଲେ, ମୁନିସିପାଲ୍‌ଟି ତା ଲୋକ ଲଗାଇ ଉଠାଇନିଏ ।

ଗୁମାନ ନିଏ ଯେ.......

ଭାନୁ ନିଏ ତ ପୁଣି ଯେ କ'ଣ ?

ଗୁମାନ ଏଟା କିନ୍ତୁ ଗୋରୁ ଗାଈ, ଛେଳି, ମଇଁଷି କି ବିଲେଇ କୁକୁର ନୁହଁ । ଖୋଦ ମଣିଷଟେ ମରିକି ପଡିଛି । ମଲା ମଣିଷ ଗୋଟେଇବ ମୁନିସିପାଲ୍‌ଟି ?

ଭାନୁ ଏଥିରେ ଆଶ୍ଚର୍ଯ୍ୟ ହେବାରେ କ'ଣ ଅଛି ? ମରିଗଲା ପରେ ସବୁ ଶବ । ଗୋରୁଗାଈ, ବିଲେଇ, କୁକୁର ଯାହା ମଣିଷ ସେଇଆ ।

ଗୁମାନ ହଉ ତାହେଲେ ଦରଖାସ୍ତ ଲେଖନ୍ତୁ ଦେଇଦେବା । ହେଲେ ଆଜି ରବିବାର, ମୁନିସିପାଲ୍‌ଟି ଅଫିସ୍ ବନ୍ଦ ।

ଭାନୁ ଏକ୍‌ଜ୍ୟୁକ୍ୟୁଟିଭ୍ ଅଫିସରଙ୍କ ଘର ମୁନିସିପାଲ୍‌ଟି ଅଫିସ ପାଖରେ । ତାଙ୍କୁ ଦେଖା କରି ଦରଖାସ୍ତଟା ଦେଇ ଦେବା । ନା କ'ଣ କହୁଛନ୍ତି ?

ଗୁମାନ ହଉ ତାହେଲେ ଲେଖନ୍ତୁ ।

ଭାନୁ ଉମା ! ଆରେ କୁଆଡେ ଗଲ କି ?

ଉମା (ଆର ଘରୁ) ନଉଚି, ନଉଚି ।

ଭାନୁ କୁନୁ ! ଏ କୁନୁ !

| | |
|---|---|
| କୁନୁ | (ଭିତରୁ) କ'ଣ ବାପା ? |
| ଭାନୁ | ଖଣ୍ଡେ କାଗଜ ଆଉ କଲମ ଆଣିଲୁ । |
| କୁନୁ | (ଭିତରୁ) ନଉଚି ବାପା । |
| ଗୁମାନ | ଦରଖାସ୍ତଟା ଇଂରାଜୀରେ ଲେଖିବା ନା ଓଡିଆରେ ଲେଖିବା ? |
| ଭାନୁ | ଓଡିଆ ତ ଆମର ସରକାରୀ ଭାଷା ହେଲାଣି, ଆଉ ବିଦେଶୀ ଭାଷାରେ କାହିଁକି ଲେଖିବା ? |
| ଉମା | (ଚା ଧରି ପ୍ରବେଶ କଲେ) ନିଅ । (ଉମାଙ୍କର ପ୍ରସ୍ଥାନ) |
| ଭାନୁ | ଚା, ନିଅନ୍ତୁ ଗୁମାନବାବୁ ! (ଭାନୁ ଓ ଗୁମାନ ଚା' ପିଇଲେ) |
| କୁନୁ | (ପ୍ରବେଶି) ନିଅ ବାପା ! (କାଗଜ କଲମ ଦେଇ ଚାଲିଗଲା) |
| ଗୁମାନ | ଓଡିଆରେ ସବୁକଥା ଲେଖି ହେବତ ? |
| ଭାନୁ | ଓଡିଆରେ ଏଇ ସାମାନ୍ୟ ଦରଖାସ୍ତଟେ ଲେଖି ହେବ ନାହିଁ ? ଆପଣ କ'ଣ ଆମ ଭାଷାକୁ ଏତେ ଦରିଦ୍ର ଭାଷା ବୋଲି ଭାବିଚନ୍ତି ? |
| ଗୁମାନ | ନାଇଁ, ଆମ ଭାଷା କଥା ମୁଁ କହୁ ନାହିଁ । |
| ଭାନୁ | ଆଉ କୋଉ କଥା କହୁଛନ୍ତି ? |
| ଗୁମାନ | ଆମେ... ମାନେ.... ଆପଣ କି ମୁଁ କାହାର ଓଡିଆରେ ଲେଖିବା ପରି ସାମର୍ଥ୍ୟ ଅଛି ତ ? |
| ଭାନୁ | ନିଜକୁ ଏତେ ଦୁର୍ବଳ ବୋଲି କାହିଁକି ଭାବୁଛନ୍ତି ଗୁମାନବାବୁ ? |
| ଗୁମାନ | ନାଇଁ, କଥା କ'ଣ କି ମୁଁ କୋଉଠି ଗୋଟେ ଗପ ପଢ଼ିଥିଲି.... |
| ଭାନୁ | ଗପ ? |
| ଗୁମାନ | ହଁ । ସେ ଗପରେ ଲେଖାଥିଲା- |
| ଭାନୁ : | କ'ଣ ଲେଖାଥିଲା ? |
| ଗୁମାନ | ଜଣେ ଅଳ୍ପ ପାଠୁଆ ଯୁବକ କଟକ ସହରର ସ୍ୟାନିଟାରୀ ଇନିସ୍‌ପେକ୍ଟର ଭାବେ ନିଯୁକ୍ତି ପାଇଲା । କିଛି ଦିନପରେ ସିଏ ଦେଖିଲା ବାଙ୍କ ବଜାରରେ ଗୋଟିଏ ଷଣ୍ଢ ମରିକି ପଡିଛି । ଏକଥା ମୁନିସିପାଲ୍‌ଟିକି ରିପୋର୍ଟ କରିବା ପାଇଁ ସିଏ କାଗଜ କଲମ ବାହାର କଲା; କିନ୍ତୁ କିଛି ଲେଖି ନପାରି କଲମଟିକୁ ପାଟିରେ କାମୁଡି ଭାବିବାକୁ ଲାଗିଲା । |

ଆନଂଦ ଚଂଦ୍ର ପହି

ଭାନୁ	କ'ଣ ତାକୁ ଲେଖି ଆସିଲା ନାହିଁ ?

ଗୁମାନ	ମୁଁ ମୂଳରୁ କହିଛି ତାର ପଢ଼ାକମ୍ । ସିଏ ଯୁକ୍ତାକ୍ଷର ଲେଖି ଜାଣିନାହିଁ । ବାଙ୍କ ବଜାରର 'ଙ୍କ' କେମିତି ଲେଖିବ ନା ଷଣ୍ଢର 'ଣ୍ଢ' କେମିତି ଲେଖିବ ? ଭାବୁ ଭାବୁ ତା ମୁଣ୍ଡକୁ ଗୋଟେ ବୁଦ୍ଧି ଦିଶିଲା । ସିଏ କ'ଣ କରିଥିବ କହିଲ ?

ଭାନୁ	ମୁନିସିପାଲ୍‌ଟି ଅଫିସ୍‌କୁ ଫୋନ୍ କରି କହିଦେଇଥିବ ।

ଗୁମାନ	ନା, ନା, ତାକୁ ରିପୋର୍ଟ ଲେଖିବାକୁ ହିଁ ପଡିବ ।

ଭାନୁ	ଆଉ କାହା ଦ୍ୱାରା ରିପୋର୍ଟ ଲେଖାଇ ଦେଇଥିବ ।

ଗୁମାନ	ନା । ଅନ୍ୟ କାହାଦ୍ୱାରା ରିପୋର୍ଟ ଲେଖାଇଲେ ତା ଚାକିରି ଚାଲିଯିବ ।

ଭାନୁ	ଆଉ ତା ହେଲେ ସିଏ କ'ଣ କଲା ?

ଗୁମାନ	ଷଣ୍ଢଟାକୁ ଲୋକ ଲାଗାଇ ଘୋଷାରି ଘୋଷାରି ଆଣି ବାଦମ ବାଡିରେ ପକାଇ ଲେଖିଲା- ଖାସୁ ନ ହୋଇଥିବା ଗୋଟେ ବଳଦ ବାଦାମବାଡିରେ ମରିପଡିଛି । (ଦୁହେଁ ହସିଲେ)

ଭାନୁ	ଛାଡନ୍ତୁ ସେ କଥା । ନିଅନ୍ତୁ କାଗଜ କଲମ ଧରନ୍ତୁ । ଦରଖାସ୍ତ ଲେଖନ୍ତୁ ।

ଗୁମାନ	(ଉଠି ଠିଆ ହେଲେ) ନାଇଁ, ନାଇଁ ଭାନୁବାବୁ ! ଆପଣଙ୍କ ଅକ୍ଷର ସୁନ୍ଦର, ଆପଣ ଲେଖନ୍ତୁ ।

ଭାନୁ	ଦରଖାସ୍ତ ଲେଖିବା ସହିତ ହ୍ୟାଣ୍ଡ ରାଇଟିଙ୍ଗ୍ ସୁନ୍ଦର, ଅସୁନ୍ଦରର କି ସମ୍ପର୍କ ଅଛି ? (ଉଠି ଠିଆ ହେଲେ) ମୁଁ ଗାଧେଇ ନେଇଁ, ଆପଣ ଲେଖନ୍ତୁ ।

ଗୁମାନ	ବସିକି ଲେଖନ୍ତୁ ମ ଠିଆ ହେଲେ କ'ଣ ? (ଭାନୁ ବାବୁଙ୍କୁ ବସାଇ ଦେଲେ) ଏଇଟା କୋଉ ଶୁଭକାମ ହେଇଚି ଯେ ଗାଧୁଆ ଦରକାର ପଡୁଚି ? ଏମିତି ଅଶୌଚିଆ କାମରେ ଅଗାଧୁଆ ବରଂ ଭଲ ।

ଭାନୁ	(ବସିଲେ) ଆପଣ ଯଦି ଲେଖିବାକୁ ନିହାତି ଅନିଚ୍ଛୁକ, ମୁଁ ଲେଖି ଦେଉଛି ।

ଗୁମାନ	ଇଚ୍ଛା, ଅନିଚ୍ଛାରେ କ'ଣ ଅଛି ? ଘର ପାଖରେ ମୁର୍ଦ୍ଦାରଟେ ପଡିଛି ଯେତେବେଳେ ଆମେ ଲେଖିବାକୁ ବାଧ୍ୟ । ନହେଲେ

ଏ ଛୁଟି ଦିନଟାରେ ଖାଇପିଇ ଟିକେ ନଶୋଇ ଏ ଲେଖା ପଢ଼ି କରିବାକୁ କାହାର ଆଗ୍ରହ ମାଡିପଡୁଛି ?

ଭାନୁ ଆପଣ ତାହେଲେ ଲେଖନ୍ତୁ ।

ଗୁମାନ ନା, ଆପଣ ଲେଖନ୍ତୁ । ମୁଁ ଚଷମାଟା ଆଣିନେଇ ।

ଭାନୁ ଏଇଟା ଗୋଟେ କଥା ? ଚଷମାଟା କ'ଣ ମଗେଇ ହବ ନେଇଁ ? ଆଲୋ ମାଆ କୁନୁ !

ଗୁମାନ ତାକୁ କାଇଁକି ଡାକୁଚନ୍ତି ?

ଭାନୁ ଆପଣଙ୍କ ଘରକୁ ଯାଇ ଚଷମାଟା ନେଇ ଆସିବ ।

ଗୁମାନ ମୁଁ ଚଷମାଟା ବାଆହାତିଆକି କାଲି ରାତିରେ କୋଉଠି ଗୋଟେ ଥୋଇ ଦେଇଛି ଯେ ଏଯାଏ ଖୋଜି ଖୋଜି ପାଉନେଇଁ । ଚଷମା ନାହିଁ ବୋଲି ମୁଁ ପରା ଆଜି ଖବର କାଗଜ ପଢ଼ି ପାରିନେଇଁ । ଲେଖିଲେ ଜଲ୍‌ଦି ଲେଖନ୍ତୁ ।

ଭାନୁ (ଲେଖିବାକୁ ଆରମ୍ଭ କଲେ) ଟୁ ଦି ଏକ୍‌ଜ୍ୟୁକୁଟିଭ ଅଫିସର୍, ଭୁବନେଶ୍ୱର ମ୍ୟୁନିସିପାଲ୍ କରପୋରେସନ୍ । ସାର୍ ।

ଗୁମାନ ଆମେ ପରା ଦରଖାସ୍ତ ଓଡିଆରେ ଲେଖିବା ।

ଭାନୁ (ହସିଲେ) ସରି ସରି, ଭୁଲ୍ ହୋଇଗଲା । ମୁଁ କାଟି ଦେଉଛି ।

ଗୁମାନ କିଛି ଭୁଲ୍ ହେଇନେଇଁ । ହେଡିଙ୍ଗ୍‌ଟା ଇଂରାଜୀରେ ଲେଖିଲେ ଚଳିବ । ଏଣିକି ଓଡିଆରେ ଲେଖନ୍ତୁ ।

ଭାନୁ ଆପଣ ତାହେଲେ ଡାକନ୍ତୁ ।

ଗୁମାନ ହଉ ଲେଖନ୍ତୁ - ନିବେଦନର କାରଣ ଏହିକି, ସହରର ପୂର୍ବ ପ୍ରାନ୍ତରେ ଥିବା ବିଶ୍ୱନାଥ କଲୋନୀ ପଡିଆରେ...

ଭାନୁ ରୁହନ୍ତୁ ।

ଗୁମାନ କ'ଣ ହେଲା ?

ଭାନୁ ଧୀରେ ଧୀରେ ଡାକନ୍ତୁ ମୁଁ ଏତେ ଶୀଘ୍ର ଲେଖିପାରୁ ନାହିଁ ।

ଗୁମାନ କ'ଣ ଲେଖିଲେ ?

ଭାନୁ ନିବେଦନର କାରଣ ଏହିକି,

ଗୁମାନ ହଁ ଲେଖନ୍ତୁ । ସହରର ପୂର୍ବ ପ୍ରାନ୍ତରେ ଥିବା.... ବିଶ୍ୱନାଥ କଲୋନୀର, ଲେଖିଲେ ?

ଭାନୁ ବିଶ୍ୱନାଥ କଲୋନୀର....

ଗୁମାନ ଶେଷରେ ଥିବା ପଡିଆରେ ଗୋଟେ.... ବେଓ୍ୱାରୀସ୍
ଭାନୁ ବେଓ୍ୱାରିସ୍ ?
ଗୁମାନ କ'ଣ ଯୁକ୍ତାକ୍ଷର ଆସିଗଲା କି ? ଠିକ୍ ଅଛି ସେଟା ନ ଲେଖନ୍ତୁ ।
ଭାନୁ ଆଉ ତାହେଲେ କ'ଣ ଲେଖିବି ?
ଗୁମାନ ଲେଖନ୍ତୁ.... ଲେଖନ୍ତୁ.... ଗୋଟେ ଅଚିହ୍ନା ନାଇଁ ଅଜଣା, ଅଶୁଣା ଶବ ପଡିଛି ।
ଭାନୁ ଅଜଣା, ଅଶୁଣା ଶବ ପଡିଛି । ତା ପରେ ?
ଗୁମାନ ଏହି ଶବଟିକୁ ଏଠାରୁ ତୁରନ୍ତ, ଲେଖିଲେ ?
ଭାନୁ ହଁ ତୁରନ୍ତ ।
ଗୁମାନ ଉଠାଇ ନେବାର ବନ୍ଦୋବସ୍ତ କଲେ...
ଭାନୁ ହଁ ।
ଗୁମାନ ସୁ ଲେଖନ୍ତୁ, ସୁ ।
ଭାନୁ ମାନେ ?
ଗୁମାନ ବନ୍ଦୋବସ୍ତ ପୂର୍ବରୁ ସୁ ଲେଖନ୍ତୁ । ମାନେ ସୁବନ୍ଦୋବସ୍ତ ।
ଭାନୁ ଲେଖିଲି ।
ଗୁମାନ ଆମେ ଚିରୋପକୃତ ହେବୁ । ଇତି ଆପଣଙ୍କର ବିଶ୍ୱସ୍ତ ବିଶ୍ୱନାଥ କଲୋନୀବାସୀଗଣ ।
ଭାନୁ ବିଶ୍ୱନାଥ କଲୋନୀ ବାସୀଗଣ । ସରିଲା ?
ଗୁମାନ ତା ତଳକୁ ଆପଣ ଦସ୍ତଖତ କରନ୍ତୁ । ହଁ, ହଁ ସେଇଠି, ସେଇଠି ସ୍ୱାକ୍ଷର କରନ୍ତୁ । ହଁ, ହେଲା ।
ଭାନୁ (ଦସ୍ତଖତ କରି ସାରି ଦରଖାସ୍ତଟା ଗୁମାନବାବୁଙ୍କୁ ବଢ଼ାଇ ଦେଲେ) ନିଅନ୍ତୁ, ଆପଣ ତା ତଳକୁ ଦସ୍ତଖତ କରନ୍ତୁ ।
ଗୁମାନ ଥରେ ପରା କହିଲି ଚଷମାଟା ଆଣି ନେଇଁ ।
ଭାନୁ ଇଏ କ'ଣ ଗୋଟେ କଥାରେ କଥା ? ଚଷମାଟା ପାଇଁ ଦସ୍ତଖତ କରି ପାରିବେ ନାହିଁ ? ନିଅନ୍ତୁ, ମୋ ଚଷମାଟା ଲଗାଇ ଚେଷ୍ଟା କରନ୍ତୁ ।
ଗୁମାନ ହଉ ତା ହେଲେ ଦିଅନ୍ତୁ । (ଚଷମା ଲଗାଇବା ସଙ୍ଗେ ସଙ୍ଗେ ବ୍ୟସ୍ତ ହୋଇ କାଢ଼ି ପକାଇ ।) ବାବାରେ ବାବା ! ଏତେ ପାଓ୍ୱାର । ମୋ ଆଖିରୁ ଖାଲି ଜୁକୁଜୁକିଆ ପୋକ ବାହାରି

ଯାଉଛି ।

ଭାନୁ — କ'ଣ ହେଲା ?

ଗୁମାନ — ମୋ ଆଖି ଦିଇଟା ଫୁଟିଗଲାପରି ଲାଗୁଛି । ମତେ କିଛି ଦିଶୁ ନାହିଁ ।

ଭାନୁ — ଆଛା ଠିକ୍ ଅଛି । ମୁଁ ଜାଗାଟା କହି ଦେଉଛି, ଆପଣ ଦସ୍ତକତଟା କରିଦିଅନ୍ତୁ । ହେଇ, ଏଇଟା କଲମ ନିଅନ୍ତୁ ।

ଗୁମାନ — ଭାନୁବାବୁ ! ଏଇଟା ଡଟ୍ କଲମ କି ? ନା, ଏଥିରେ ଲେଖିବା ମୋର ଜମା ଅଭ୍ୟାସ ନାହିଁ ।

ଭାନୁ — ଦସ୍ତକତଟା ଯୋଉ କଲମରେ କଲେ ବି ଚଳିବ । ନିଅନ୍ତୁ କରନ୍ତୁ ।

ଗୁମାନ — ହଉ ଦିଅନ୍ତୁ । ଆପଣ ଛାଡିବେ ନାହିଁ ଦେଖୁଛି ।
(ଦରଖାସ୍ତାରେ ହାପ୍ ଦସ୍ତକତ କରିଦେଲେ)

ଭାନୁ — ନାଇଁ, ନାଇଁ ହାଫ୍ ଦସ୍ତକତ ଚଳିବ ନାହିଁ, ପୂରା ଦସ୍ତକତ କରନ୍ତୁ ।

ଗୁମାନ — ହାଫ୍ କ'ଣ, ଫୁଲ୍ କ'ଣ ? ସେଇ ହାଫ୍ ଦସ୍ତକତଟା କ'ଣ ଦସ୍ତକତ ନୁହଁ ? ଅଫିସ୍ କାଗଜପତ୍ର, ଫାଇଲ୍ ସବୁଥିରେ ମୁଁ ସେଇ ହାଫ୍ ଦସ୍ତକତ କରେ ।

ଭାନୁ — ନାଇଁ, ନାଇଁ, ସେ ହାଫ୍ ଫାଫ୍ ଚଳିବ ନାହିଁ । ଆପଣ ପୂରା ଦସ୍ତକତ କରନ୍ତୁ । ଆପଣ ଯଦି ଏମିତି ମିଞ୍ଜି ମିଞ୍ଜି କରି ତା ଉପରେ ତା ଉପରେ ଚଢ଼େଇ ମଡେଇ ହାଫ୍ ଦସ୍ତକତ କରିବେ, ତା ହେଲେ ଏ କଲୋନୀବାଲା ସମସ୍ତେ ଆପଣଙ୍କ ପଦାଙ୍କ ଅନୁସରଣ କରିବେ । କରିବେତ ମରଦପୁଅ ପରି ସଫାସଫା ସିଧା ପୂରା ଦସ୍ତକତ କରିଦେବେ, ମାଇଲିଏ ବାଟରୁ ପଢ଼ି ହେଉଥିବ ଗୁମାନ ସିଂହ । ଆଉ ଏମିତି ଗେଞ୍ଜି ଗେଞ୍ଜି ହଉଚନ୍ତି କ'ଣ ? କ'ଣ ଡର ମାଡୁଚି ?

ଗୁମାନ — ଡର କାଇଁକି ମାଡିବ ? ମୁଁ କ'ଣ ଚୋରି କରିଛି, ନା ମଣିଷ ମାରିଚି ?

ଭାନୁ — କିଛି ତ କରି ନାହାନ୍ତି, ଏମିତି ଘୁଞ୍ଛୁପୁଞ୍ଛୁ ଲୁଚୁଲୁଚୁ ହେଉଛନ୍ତି କ'ଣ ଡର ମାଡୁଚି ? କାହିଁକି ? କରନ୍ତୁ ପୂରା ହିରୋ ଟା...

ଫୁଲ୍ ଦସ୍ତକତ କରନ୍ତୁ ।

ଗୁମାନ କ'ଣ କହିଲେ ଡର ?

ଭାନୁ ହଁ ଡର । ଦସ୍ତକତ କରିବାକୁ ଆପଣଙ୍କୁ ଡର ମାଡୁଛି ।

ଗୁମାନ ଗୁମାନ ସିଂହକୁ ପୁଣି ଡର ? ଦିଅନ୍ତୁ ସେ ଦରଖାସ୍ତ । (ଭାନୁ ବାବୁଙ୍କ ହାତରୁ ଦରଖାସ୍ତ ଛଡାଇ ନେଇ ପୂରା ଦସ୍ତକତ କରିଦେଲେ) ହେଲା ?

ଭାନୁ : ହଁ, ଏଥର ହେଲା ।

ଗୁମାନ ନିଅନ୍ତୁ ଏଥର ଆପଣଙ୍କ ଦରଖାସ୍ତ ।

ଭାନୁ ମୁଁ ନେଇକି କ'ଣ କରିବି ? ମତେ ଭାରି ଭୋକ ହେଲାଣି । ମୁଁ ଯାଉଛି, ଗାଧୁଆ ପାଧୁଆ କରି ଖାଇବି । ଆପଣଟିକେ କଲୋନୀର ଅନ୍ୟ ସମସ୍ତଙ୍କ ଠାରୁ ଏ ଦରଖାସ୍ତରେ ଦସ୍ତକତ କରାଇ ଆଣିବେ ।

ଗୁମାନ ମୁଁ ମାଂସ ଭାତ ଗ୍ରାସେ ଖାଇ ଦେଇଛି, ମତେ ଅସକଟିଆ, ଅସକଟିଆ ଲାଗୁଛି । ମୁଁ ଯାଉଛି ଶୋଇବି । ଆପଣ ରଖନ୍ତୁ ଗାଧୋଇ ଖାଇସାରି ଦସ୍ତକତ କରାଇ ଆଣିବେ । (ହାଇ ମାରିଲେ ଦରଖାସ୍ତଟା ଟିପୟ ଉପରେ ଥୋଇଦେଇ ଘରକୁ ଯିବାକୁ ବାହରିଲେ)

ଭାନୁ ଗୁମାନ ବାବୁ ! ପ୍ଲିଜ୍.....

ଗୁମାନ ନାଇଁ ଭାଇ ମତେ ସେ କଥା ଆଉ କୁହନ୍ତୁ ନାହିଁ । ମୁଁ ପାରିବି ନେଇଁ ।

ଭାନୁ ଇଏ କ'ଣ ଗୋଟେ କଥା ? ପାରିବେ ନେଇଁ କ'ଣ ?

ଗୁମାନ କହିଲିତ ପାରିବି ନେଇଁ, ଆପଣ ସବୁକଥାରେ ଏମିତି ଗୋଟେ ଜୋର ଜବରଦସ୍ତି କ'ଣ କରୁଚନ୍ତି ?

ଭାନୁ ପାରିବେ ନେଇଁ କଥାଟା ମିଛ । ସତ କଥାଟା ହେଉଛି ଡର ।

ଗୁମାନ ପୁଣି ସେଇ କଥା କହିଲ ? ଗୁମାନ ସିଂହକୁ ପୁଣି ଡର ଗୋଟେ କ'ଣ ? ହଉ ଠିକ୍ ଅଛି, ମୁଁ ନେଇକି ଦସ୍ତକତ କରାଉଛି । (ଦରଖାସ୍ତଟିକୁ ପୁଣି ଟିପୟ ଉପରୁ ଉଠାଇ ନେଲେ) ଆପଣ ଶୀଘ୍ର ଗାଧୋଇ ଖାଇ ଆସନ୍ତୁ ।

ଭାନୁ ହଉ, ଆପଣ ଚାଲନ୍ତୁ, ମୁଁ ଅଧଘଣ୍ଟାକ ଭିତରେ ଯାଉଛି ।

ଆନନ୍ଦ ଚନ୍ଦ୍ର ପହି

(ଗୁମାନ ବାବୁଙ୍କ ପ୍ରସ୍ଥାନ ଓ ଆର ଘରୁ ପ୍ରବେଶ କରିଛନ୍ତି ଉମା)

ଉମା ଆଚ୍ଛା ତମର କଣ ଦରକାର ଥିଲା ଗୁମାନବାବୁଙ୍କୁ ଏତେ ଜୋରଜବରଦସ୍ତ କରି ଦସ୍ତକତ କରାଇବା ?

ଭାନୁ କାହିଁକି କ'ଣ ହେଲା ?

ଉମା କ'ଣ ହେଲା ? ଯେତେବେଳେ ବୁଝିବ, ସେତେବେଳେ ମତେ କହିବ ।

ଭାନୁ କ'ଣ ବୁଝିବି ? ଆଉ କ'ଣ ତମକୁ କହିବି ? କିହୋ, ଘରପଛପଟରେ ଗୋଟେ ମୁର୍ଦ୍ଦାର ପଡିଛି, ସେ ବିଷୟରେ କିଛି ଗୋଟେ ଷ୍ଟେପ୍ ନେବା କ'ଣ ମୋର ଭୁଲ୍ ?

ଉମା ସେ ଭୁଲ୍ ଠିକ୍‌ର ହିସାବ ମୋତେ ବୁଝାଅନି । ମୋର କହିବା କଥା, ଆମେ କ'ଣ ଠିକା ନେଇଛେ, ଏ କଲୋନୀର ଯାହା ହେବ ନ ହେବ ସବୁଥିରେ ମୁଣ୍ଡଭର୍ତ୍ତି କରି ଆଗକୁ ବାହାରିବା ?

ଭାନୁ ବୁଝିଲ ଉମା ! ମୁଁ ଦେଖୁଛି, ଆସ୍ତେ ଆସ୍ତେ ତୁମର ମଣିଷ ପଣିଆ ଲୋପ ପାଇ ଯାଉଛି । ହଁ ଶୁଣ, ମୁଁ ଯାହା ଭଲ ଆଉ ଉଚିତ ମନେ କରୁଛି ସେଇଟା କରୁଛି । ତମର ସେଥିରେ ମୁଣ୍ଡ ଖେଳାଇବା ଦରକାର ନାହିଁ । (ପ୍ରସ୍ଥାନ)

ଉମା ଠିକ୍ ଅଛି, ତମ ମନକୁ ଯାହା ଆସୁଛି ସେଇଆ କର । ମୁଁ ଏ ଘରେ କିଏ ଯେ ତୁମକୁ କହିବି ? ଯେତେବେଳେ ନେଡିଗୁଡ କହୁଣୀକୁ ବହିଯିବ ସେତେବେଳେ ମୋ କଥା ହେଜିବ । ସବୁ ନାଟର ଗୋବର୍ଦ୍ଧନ ଏଇ କୁନୁ । ହଇଲୋ କୁନୁ ! କୁନୁ !

କୁନୁ (ଅନ୍ୟ ଘରେ ଥାଇ) କ'ଣ ବୋଉ !

ଉମା ଇଆଡେ ଆସିଲୁ ।

କୁନୁ (ପ୍ରବେଶି) କ'ଣ ବୋଉ ?

ଉମା ହଇଲୋ ! ବାପା ଆସୁ ଆସୁ ତାଙ୍କ କାନରେ ଫୋଡି ଦେଲୁ ?

କୁନୁ କୋଉ କଥା ?

ଉମା କୋଉ କଥା ? ତୋର କ'ଣ ଦରକାର ଥିଲା ସେ ମୁର୍ଦ୍ଦାର କଥା କହିବା ।

କୁନୁ ମୁଁ କାହିଁକି କହିଲି ତୁ ସେକଥା ବୁଝିପାରିବୁ ନାହିଁ ।

ଉମା  କ'ଣ କହିଲୁ, ମୁଁ ବୁଝିପାରିବି ନେଇଁ ?
କୁନୁ  ନା, ତୁ ବୁଝିପାରିବୁନି ।
ଉମା  ତୁ କାଲିକା ପିଲା, ତୁ ବୁଝିବୁ, ମୁଁ ବୁଝିପାରିବି ନି ?
କୁନୁ  ତୁ ବୁଝିପାରିଥିଲେ, ମୋତେ ଏକଥା କହି ନଥାନ୍ତୁ ।
ଉମା  ତୁ କ'ଣ ବୁଝିଛୁ କହିଲୁ ?
କୁନୁ  ସେଠି ଯୋଉ ଲୋକଟା ପଡିଛି, ସେଟା ଯଦି ମରି ନଥିବ ?
ଉମା  ମାନେ ? ତୁ କ'ଣ କହିବାକୁ ଚାହୁଁଛୁ ?
କୁନୁ  ସେ ଲୋକଟା ଯଦି ଆମର କିଏ ନିଜର ହୋଇଥାନ୍ତା, ତାହେଲେ ତୁ କ'ଣ ଏମିତି ଚୁପ୍ ରହିଥାନ୍ତୁ ?
ଉମା  କୁନୁ !
(ରାଗିଯାଇ ଚାପୁଡା ମରିବାକୁ ହାତ ଉଠାଇଲେ ଏବଂ ସଙ୍ଗେ ସଙ୍ଗେ ମଞ୍ଚ ଅନ୍ଧକାର ହେଲା ।)



ଆନଂଦ ଚଂଦ୍ର ପହି

# ଦ୍ୱିତୀୟ ଦୃଶ୍ୟ

(ଭାନୁପ୍ରକାଶଙ୍କ ଘର । ସେଇ ରବିବାର । ସମୟ-ଖରାବେଳ । ପଡିଶା ଘର ଝିଅ ସୁନୁ ଆସିଛି ।)

ସୁନୁ   କୁନୁ ନାନୀ ! କୁନୁ ନାନୀ !

କୁନୁ   (ପ୍ରବେଶି) କ'ଣ ହେଲା ସୁନୁ ?

ସୁନୁ   ଆସ ଖେଳିବାକୁ ଯିବା ।

କୁନୁ   ନାଇଁ ଏଇନା ବାହାରକୁ ଗଲେ ବାପା ଗାଳି ଦେବେ ।

ସୁନୁ   ଆଚ୍ଛା କୁନୁନାନୀ ! ତମ ଘର ପଛପଟେ ଯିଏ ମରିକି ପଡିଚି ସିଏ କିଏ ? ତାକୁ କିଏ ମାରିଚି ?

କୁନୁ   ନାଇଁ, ସେ କଥା ମୁଁ ଜାଣି ନେଇଁ ।

ସୁନୁ   ମୋ ବୋଉ କହିଲା ତମର କୁଆଡେ ସବୁ ଜାଣିଚ ।

କୁନୁ   ନାଇଁ, ଆମେ କିଛି ଜାଣି ନଉଁ । ଏଇ ମିଶ୍ର ଘର ଗଦା କହୁଥିଲା...

(ଏହି ସମୟରେ ଭାନୁ ଆସିଛନ୍ତି । ତାଙ୍କୁ ଦେଖି କୁନୁ ଚୁପ୍ ହୋଇ ଯାଇଛି )

ଭାନୁ   ଆରେ ସୁନୁ ! ତୋ ବାପା ଘରେ ଅଛନ୍ତି ?

ସୁନୁ   ହଁ ମଉସା, ବାପା ଘରେ ଅଛନ୍ତି ।

ଭାନୁ   ତୁ କ'ଣ କୁନୁ ସାଙ୍ଗରେ ଖେଳିବାକୁ ଆସିଚୁ ?

ସୁନୁ   ହଁ ।

ଭାନୁ   ହଉ, ତମେ ଯା ଖେଳିବ ।

(କୁନୁ ଓ ସୁନୁ ଅନ୍ୟ ବଖରାକୁ ଚାଲିଗଲେ ।)

ଭାନୁ   ଆରେ ଉମା !

ଉମା   (ଆର ଘରେ ଥାଇ) କ'ଣ ହେଲା ?

ଭାନୁ   ମତେ ଯିଏ ଖୋଜିବ କହିଦେବ ସିଏ ଦରଖାସ୍ତରେ ଦସ୍ତକତ

କରାଇବାକୁ କଲୋନୀ ଆଡେ ଯାଇଚନ୍ତି ।
(ବ୍ୟସ୍ତ ବିବ୍ରତ ହୋଇ ଘର ଭିତରକୁ ପଶି ଆସିଲେ ଗୁମାନ ସିଂହ । ତାଙ୍କ ହାତରେ ଦରଖାସ୍ତ ଓ କଲମ ।)

ଗୁମାନ ଆଉ କେହି ଯିବା ଦରକାର ନାହିଁ । ନିଅନ୍ତୁ ଆପଣଙ୍କ ଦରଖାସ୍ତ ।

ଭାନୁ କ'ଣ ସମସ୍ତଙ୍କ ଦସ୍ତକତ ହୋଇଗଲା ?

ଗୁମାନ ଦସ୍ତକତ ନାଆଁ ଆଉ ଧରନ୍ତୁ ନାହିଁ ।

ଭାନୁ : କାହିଁକି ? କ'ଣ ହେଲା ? ଆପଣ ଏମିତି ଡରିଲା, ଡରିଲା ପରି କାହିଁକି ଦିଶୁଚନ୍ତି ?

ଗୁମାନ ବାଘ ଦେଖିଛନ୍ତି ?

ଭାନୁ ଦେଖିଚି ।

ଗୁମାନ ବାଘ ଲାଞ୍ଜ ?

ଭାନୁ ବାଘ ଦେଖିଚି, ଆଉ ତା ଲାଞ୍ଜ ଦେଖି ନେଇଁ ?

ଗୁମାନ ପୋଲିସବାଲାଙ୍କ ନିଶ କେମିତି ବାଘ ଲାଞ୍ଜ ପରି ଦୁଇ ପଟକୁ ଓହଳିଥାଏ ଦେଖିଛନ୍ତି ?

ଭାନୁ ଦେଖିଚି

ଗୁମାନ ଲାଠି ?

ଭାନୁ ହଁ

ଗୁମାନ ପୋଲିସର ଥ୍ରି ନଟ ଥ୍ରି ବନ୍ଧୁକ ?

ଭାନୁ ଦେଖିଚି ।

ଗୁମାନ ହ୍ୟାଣ୍ଡ କପ୍ ଦେଖିଛନ୍ତି ?

ଭାନୁ ଦେଖିଚି ।

ଗୁମାନ ଅନ୍ଧାରୀ ହାଜତ ?

ଭାନୁ ଆରେ ବାବା, ସବୁ ଦେଖିଛି । କ'ଣ ହେଲା ? କାହିଁକି ଏ ସବୁ ମତେ ପଚାରୁଚନ୍ତି ?

ଗୁମାନ ଏସବୁକୁ ଏକାଠି ମିଶାଇ ଯଦି ଆମଠି ପ୍ରୟୋଗ କରାଯାଏ ଆମ ଅବସ୍ଥା କ'ଣ ହେବ ବୁଝି ପାରୁଛନ୍ତି ତ ?

ଭାନୁ ଆମେତ ମ୍ୟୁନିସିପାଲ୍‌ଟିକି ଦରଖାସ୍ତ ଦେବା, ସେଥିରେ ପୋଲିସ୍, ଲାଠି, ବନ୍ଧୁକ, ହାଜତ ଏସବୁ କୁଆଡେ ଆସିଲା ?

ଗୁମାନ ମୁଁ ବି ସେକଥା ବୁଝି ନଥିଲି, ମତେ ବୁଝେଇ ଦିଆଗଲା ।
ଭାନୁ କିଏ ଆପଣଙ୍କୁ କ'ଣ ବୁଝାଇଲା ?
ଗୁମାନ ଏ ଦରଖାସ୍ତରେ ଦସ୍ତକତ କରିବାକୁ ମୁଁ ଯାହାକୁ କହିଲି ସିଏ କହିଲା- ଏ ଲୋକଟା ମରିବା ବିଷୟରେ ନାନା କଥା ଶୁଣାଯାଉଛି । ଏଟା ଗୋଟେ ଶକ୍ତ ମର୍ଡର କେଶ୍ । ଏ ଶବ ପଡିଥିବା କଥା ଯିଏ ମୁନିସିପାଲଟିକୁ ଲେଖିକି ଦେବ ସିଏ ମର୍ଡର କେଶର ଫାଶ ନିଜ ଗଳାକୁ ଆଣିବ ।
ଉମା (ପ୍ରବେଶି) ଏଁ ମର୍ଡର କେଶ ? ମୁଁ ପରା ଯାଙ୍କୁ ନାହିଁ କରୁଚି । ଆମର ଏତେ ଅଡୁଆରେ ପଶିବା ଦରକାର ନାହିଁ । ଶବଟା ପଡିଚି, ପଡିଥାଉ ।
ଭାନୁ ତମେ ଚୁପ୍ କର ।
ଉମା ମୁଁ ତ ଭଲ କଥା କହିଲେ ତୁମକୁ ଗନ୍ଧଉଚି । ଇଏ ଛୋଟିଆ କଥା ହେଇ ନେଇଁ, ଏକାବେଳକେ ମଡର କେଶ୍ ।
ଭାନୁ ଆମେ ତା ହେଲେ ମୁନିସିପାଲ୍‌ଟିକି ନଦେଇ ଦରଖାସ୍ତଟା ଥାନାକୁ ଦେଇଦେବା ।
ଗୁମାନ କ'ଣ କହିଲେ, ଥାନାକୁ ଦେଇ ଦେବା ? ମୁଁ ଦେଖୁଛି ଆପଣଙ୍କର ସାନ ପିଲାଟାକର ବୁଦ୍ଧିନାହିଁ ।
ଉମା ମୁଁ ଜାଣିଚି ଇଏ ଆମର ସବୁ କଥାରେ ତର ବରିଆ । ଆଗପଛ କିଛି ନବିଚାରି ସବୁକାମ କରିବାକୁ ହମହମ ।
ଭାନୁ ଥରେ ପରା କହିଲି ତମେ ଚୁପ୍‌କର ବୋଲି ।
ଉମା ହଉ ମୁଁ ଚୁପ୍ ହେଲି, ଯାହା କରିବା କଥା ବୁଝି ବିଚାରି କର ।
ଭାନୁ ଆଚ୍ଛା ଗୁମାନବାବୁ ! ଆମେ ଥାନାକୁ ଦରଖାସ୍ତ ଦେଲେ କ'ଣ ସବୁ ଅସୁବିଧା ହେବ ?
ଗୁମାନ : ପୋଲିସ୍‌ର ଚାରିଆଡେ ଧାର । ଯିଏ ପୋଲିସ୍‌ରେ ଦରଖାସ୍ତ ଦେବ ପୋଲିସ ତାକୁ ଆଗ ଜେରା କରିବ । ସେଇ ଲୋକ ମର୍ଡରର ବୋଲି ଭାବି ତାକୁ ଆରେଷ୍ଟ କରିବ । ପୋଲସ୍‌ର ସନ୍ଦେହ ଘେରରେ ପଡିବା କେତେ ବିପଦଜନକ ସେ କଥା କ'ଣ ଆପଣଙ୍କୁ ବୁଝାଇବାକୁ ପଡିବ ?
ଉମା ତାଙ୍କୁ ଟିକେ ବୁଝାନ୍ତୁ ଗାମାନବାବୁ ! ସିଏ ମୋ କଥା ମୋଟେ

କାନକୁ ନେଉନାହାଁନ୍ତି । ଏତେ ଝମେଲାରେ ଆମେ କାହିଁକି ପଶିବା ? ସମସ୍ତେ ଯେମିତି ଦେଖି ନ ଦେଖିବା ପରି, ଛାଣି ନ ଛାଣିବା ପରି ରହୁଛନ୍ତି, ଆମେ ଠିକ୍ ସେମିତି ରହିବା । (ଘର କାମରେ ବ୍ୟସ୍ତ ରହିଲେ ।)

ଭାନୁ  କେହି ତାହେଲେ କ'ଣ ଦସ୍ତକତ କଲେ ନଇଁ ?

ସ୍ମୃତି  (ହଠାତ୍ ପ୍ରବେଶି) ଏଇ ନରାଧମ ସ୍ମୃତି ମହାନ୍ତି କିଛି ନ ବୁଝି ଦସ୍ତକତ କରି ପକେଇଚି ।

ଭାନୁ  ଆରେ ସ୍ମୃତିବାବୁ ! ବସନ୍ତୁ ।

ସ୍ମୃତି  ନାଇଁ, ମୋର ବସିବା ଦରକାର ନାହିଁ, ଦରଖାସ୍ତରୁ ମୋ ନାଆଁଟା କାଟି ଦିଅନ୍ତୁ ମୁଁ ଚାଲିଯାଏ ।

ଭାନୁ  ଇଏ କ'ଣ ଗୋଟେ କଥା ? ଏତେ ଦିନ ପରେ ଆମ ଘରକୁ ଆସିଚନ୍ତି, ଟିକେ ନବସି ଚାଲିଯିବେ ?

ସ୍ମୃତି  ନାଇଁ ମୋ ଦସ୍ତକତଟା କାଟିଦିଅନ୍ତୁ, ମୁଁ ଚାଲିଯାଏ ।

ଗୁମାନ  ଆରେ ବସନ୍ତୁ ଆଉ ।

ଭାନୁ  ବସନ୍ତୁ ।

ସ୍ମୃତି  (ବସିପଡି ଏଣେ ତେଣେ ଚାହିଁଲେ)

ଗୁମାନ  ଏମିତି ୟାଡକୁ ସ୍ୟାଡକୁ ଚାହୁଁଛନ୍ତି କାହିଁକି ?

ସ୍ମୃତି  ଆପଣମାନେ ଗୋଟେ କାନ୍ଦଣାର ସ୍ୱର ଶୁଣି ପାରୁଛନ୍ତି ?

ଉମା  କାନ୍ଦଣା ? କିଏ କାନ୍ଦୁଛି ?

ସ୍ମୃତି  ଆମ ଶ୍ରୀମତୀ ବାହୁନିକି କାନ୍ଦୁଛନ୍ତି ।

ଉମା  ସୁନୁ ବୋଉଙ୍କର କ'ଣ ହେଇଚି ?

ସ୍ମୃତି  ନା, ତାଙ୍କର କିଛି ହେଇ ନେଇଁ ।

ଭାନୁ  ଆପଣଙ୍କର କିଛି ହେଇଚି ?

ସ୍ମୃତି  ନାଇଁତ ।

ଗୁମାନ  ଆଉ ତାହେଲେ ଆପଣଙ୍କ ଶ୍ରୀମତୀ କାହିଁକି କାନ୍ଦୁଚନ୍ତି ?

ସ୍ମୃତି  ଆପଣ ଯୋଉ ଦରଖାସ୍ତ ନେଇଥିଲେ, ମୁଁ ସେଇଥିରେ ଦସ୍ତକତ କରି ଦେଇଚି ବୋଲି ଆମ ଶ୍ରୀମତୀ ଶୁଣିଲେ ଆମ ପଡିଶା ଘରୁ । ତାଙ୍କୁ ଆମ ପଡିଶା ଘର ସ୍ତ୍ରୀ ବୁଝାଇ ଦେଲେ ସେ ଦରଖାସ୍ତରେ ମୁଁ ଦସ୍ତକତ କରିଚି ନିଶ୍ଚୟ ମର୍ଡର କେଶ୍‌ରେ

ପଡ଼ିବି । ଏଇ କଥା ଶୁଣିବା ବେଳୁ ସିଏ ନାହିଁ ନଥିବା କାନ୍ଦ କାନ୍ଦୁଚନ୍ତି । ତାଙ୍କୁ ଗୋଟେ ମଉକା ମିଳିଗଲା ।

ଭାନୁ    ମଉକା ? କି ମଉକା ?

ସ୍ମୃତି    ଯଦି ଆମ ଶ୍ରୀମତୀ କେବେ ବିଧବା ହୁଅନ୍ତି, ତାହେଲେ କେମିତି କାନ୍ଦିବେ, କେତେ ମନ ଦୁଃଖ କରିବେ ତାର ଗୋଟେ ନମୁନା ନିଜ ସ୍ୱାମୀଙ୍କ ଆଗରେ ପେଶ କରିବାର ଇଏ ଗୋଟେ ସୁନ୍ଦର ମଉକା ।

(ସମସ୍ତେ ଏକ ସମୟରେ ହସି ଉଠିଲେ । ଏଇ ସମୟରେ ପଶି ଆସିଲେ ସ୍ମୃତି ମହାନ୍ତିଙ୍କ ସ୍ତ୍ରୀ କାବେରୀ । ସ୍ମୃତି ଭୟଭୀତ ହୋଇ ଠିଆ ହୋଇ ପଡ଼ିଲେ । ସମସ୍ତଙ୍କ ହସ ବନ୍ଦ ହୋଇଗଲା ।)

କାବେରୀ :  କ'ଣ ସେ ଦରଖାସ୍ତରୁ ଦସ୍ତକତ କାଟିଲ ନା ଏଠି ବସି ହେଁ, ହେଁ ଫେଁ ଫେଁ ହେଉଛ ?

ସ୍ମୃତି    (ଡରି ଡରି) ନାଇଁ ମୁଁ ତ ହସି ନେଇଁ ।

କାବେରୀ :  ଏଇ ଟିକକ ଆଗରୁ ହସୁ ନଥିଲ ?

(ସ୍ମୃତି କରୁଣ ଭାବେ ଭାନୁବାବୁ ଓ ଗୁମାନବାବୁଙ୍କ ମୁହଁକୁ ଚାହିଁଲେ ।)

କାବେରୀ :  ସେ ଦରଖାସ୍ତରୁ ଦସ୍ତକତ କାଟିଲ ?

ସ୍ମୃତି    କାଟି ଦେବି ।

କାବେରୀ :  କାଟିଦେବି କ'ଣ ? କିଏ ତମକୁ କହୁଥିଲା କିଛି ନଜାଣି, କିଛି ନ ବୁଝି ଯୋଉଠି ପାରେ ସେଠି ଦସ୍ତକତ କରିବାକୁ ? ଏଠି ପର ନାଆଁରେ ମଙ୍ଗଳବାର କରିବା ଲୋକ ବହୁତ ଅଛନ୍ତି । ତମେ ସିନା ଏମାନଙ୍କୁ ଚିହ୍ନିନା, ମୁଁ କିନ୍ତୁ ଏମାନଙ୍କୁ ଗୋଟି ଗୋଟିକି ଚିହ୍ନିଚି । ଏମାନେ ପରମୁଣ୍ଡରେ ନଡ଼ିଆ ଭାଙ୍ଗି ପାଟି ସୁଆଦ କରନ୍ତି ।

ଉମା    କିଏ ପର ମୁଣ୍ଡରେ ନଡ଼ିଆ ଭାଙ୍ଗି ପାଟି ସୁଆଦ କରୁଚି ?

କାବେରୀ   ସେ କଥା ତୁମ ସ୍ୱାମୀଙ୍କୁ ପଚାର । ତମ ଘର ପଛପଟରେ ମୁର୍ଦ୍ଦାର ପଡ଼ିଚି ଆମକୁ କାହିଁକି ସେଥିରେ ଯୋଡୁଛ ? ଦରଖାସ୍ତ ଦେବତ, ନିଜେ ଲେଖିଚ ଦେଇ ଦେବ । ଯାଙ୍କଠୁ କାଇଁକି

ଦସ୍ତକତ ଆଣିଲ ?

ଉମା ସ୍ମୃତିବାବୁ କ'ଣ ପିଲା ହେଇଚନ୍ତି ? ସିଏ କାଇଁକି ଦସ୍ତକତ କରୁଥିଲେ ? ତାଙ୍କୁ କ'ଣ କିଏ ବାଧ୍ୟ କରୁଥିଲା ।

ସ୍ମୃତି ନାଇଁ ମତେ କେହି ବାଧ୍ୟ କରି ନାହାଁନ୍ତି ।

ଉମା ତମେ ଚୁପ୍ କର । ଆଚ୍ଛା ଗୁମାନବାବୁ ! ଆପଣ ଦରଖାସ୍ତ ଧରିକି ଘରଘରକି ଦସ୍ତକତ କରାଇ ନାହାଁନ୍ତି ?

ଉମା ଦରଖାସ୍ତ ବୁଲାଇବା କ'ଣ ଦୋଷ ହୋଇଗଲା ? କେହିତ କାହା ହାତ ଧରିକି ଦସ୍ତକତ କରେଇ ଆଣି ନାହାଁନ୍ତି ? ଯିଏ ଦସ୍ତକତ କରିଚି ସିଏ ନିଜ ଇଛାରେ କରିଛି ।

ଭାନୁ ଦରଖାସ୍ତରେ ଦସ୍ତକତ କରିବାରେ ଅସୁବିଧା କିଛି ନାହିଁ । ଆପଣ ଏମିତି ବ୍ୟସ୍ତ କାଇଁକି ହେଉଚନ୍ତି ?

କାବେରୀ : ଅସୁବିଧା ଅଛିକି ସୁବିଧା ଅଛି ସେକଥା ମୋତେ ବେଶ୍ ଜଣାଅଛି । ଆପଣ ଜଣେ ଖୁବ୍ ବିପଦଜନକ ଲୋକ । କଲୋନୀର ସବୁ ଲୋକଙ୍କୁ ମର୍ଡର କେଶ୍‌ରେ ପକାଇ ଆପଣ ହଲାପଟା କରିବେ ।

ଉମା ମୁଁ ପରା ତୁମକୁ ନାହିଁ କରୁଚି, ଏତେ ଝମେଲା ଭିତରେ ପଶନା । ତମେ କ'ଣ ଏ କଲୋନୀ ଲୋକଙ୍କୁ ଚିହ୍ନିନା ?

କାବେରୀ : କେହି କାହାକୁ ଚିହ୍ନିବା ଆଉ ବାକି ନାହିଁ । ତମକୁ ଆମେ ଚିହ୍ନିଚୁ । ଏଠି ଦେଶସେବୀ ଗୋପବନ୍ଧୁ କେହି ନାହାନ୍ତି, ସମସ୍ତେ ମତଲବୀ ।

ଭାନୁ ଏଥିରେ ମତଲବ କ'ଣ ଆଉ ରହିଲା ? ମୁଁ ତ ପୁଣି ସେ ଦରଖାସ୍ତରେ ପ୍ରଥମେ ଦସ୍ତକତ କରିଚି ।

କାବେରୀ : ସେଇଟା ଆପଣଙ୍କର ଚାଲ ।

ଗୁମାନ ଚାଲ୍ କ'ଣ ?

କାବେରୀ : ଭାନୁବାବୁ ଆଗେ ଦସ୍ତକତ କରିଦେଲେ, ତାଙ୍କ ଦେଖା ଦେଖି ଏ କଲୋନୀର ମେଣ୍ଢାମାନେ ଗୋଟି ଗୋଟିକି ଦସ୍ତକତ କରିଦେଲେ । ଦରଖାସ୍ତ ମୁନିସିପାଲ୍‌ଟିରେ ଦେବା ଆଗରୁ ନିଜ ସ୍ତକତଟା ସେଥିରୁ କାଟି ନଦେବେ ବୋଲି କିଏ କହିବ ?

ଉମା ଅନ୍ୟମାନଙ୍କୁ ନିଜ ମାପକାଠିରେ କାହିଁକି ମାପୁଚ ? ତମେ

ନିଜେ ସେଇଆ ବୋଲି ସମସ୍ତଙ୍କୁ ସେଇୟା ଭାବୁଚ ।

କାବେରୀ : ଆମେ କ'ଣ ସେଇଆ ? ଆମେ ସେମିତିଆ କାମ କ'ଣ କରିଚୁ ତମ ପାଖରେ କିଛି ପ୍ରମାଣ ଅଛି ?

ଉମା । ଆମେ ସେମିତି ଅବିଶ୍ୱାସୀ କାମ କେବେ କରିଚୁ ବୋଲି ତମେ କିଛି ପ୍ରମାଣ ଦେଖାଇ ପାରିବ ?

କାବେରୀ : ଅଲବତ ଦେଖେଇବି ।

ଉମା । ଦେଖା କି ପ୍ରମାଣ ଅଛି ।

କାବେରୀ : ଦେଖେଇବି ।

ଉମା । ଦେଖଉନା, ଦେଖେଇବି, ଦେଖେଇବି କ'ଣ ହଉଚ ।

ଭାନୁ (ଚିତ୍କାର କରି) ଉମା ! ତମେଟିକେ ଚୁପ୍ କଲ ।

ଉମା । କାଇଁକି ଚୁପ୍ ହେବି ନା ? କିଛି ନ କହିବାରୁ ୟାଙ୍କର ସାହସ ବଢ଼ିଯାଉଚି ।

କାବେରୀ : ତମେ କ'ଣ ଆମ ସାହସ କମେଇ ଦବ ?
(ସ୍ମୃତି ପ୍ରତି) ତମେ ଚୁପ୍‌ଟା ହେଇ ଠିଆହେଇଚ କ'ଣ ? ତମ ପାଟିରେ କ'ଣ ମଣ୍ଡା ପଶିଚି ?

ସ୍ମୃତି : ତମେ ମତେ କହିଲ ଚୁପ୍ ହେଇ ଠିଆ ହେବାକୁ, ମୁଁ ଆଉ କ'ଣ କରିଥାନ୍ତି ?

ଭାନୁ ଏତେ ଅବିଶ୍ୱାସ କରିବାର କ'ଣ ଅଛି ? ଗୁମାନବାବୁତ ପୁଣି ଦରଖାସ୍ତରେ ଦସ୍ତକତ କରିଚନ୍ତି ।

କାବେରୀ : ଗୁମାନବାବୁ ଆପଣଙ୍କୁ ଚିହ୍ନି ନାହାଁନ୍ତି । ଚିହ୍ନିଲା ବେଳକୁ ଆଉ ମାପ ନଥିବ ।

ଗୁମାନ ଭାନୁବାବୁ । ଏତେ କଥାରୁ କ'ଣ ମିଳିବ ? ଦରଖାସ୍ତଟା ଚିରିଦିଅନ୍ତୁ, ସବୁ ଅଡୁଆ ତୁଟିଯାଉ ।

ଉମା । କାଇଁକି କ'ଣ ତାଙ୍କୁ ଡରିକି ?

କାବେରୀ : ତମେତ ସମସ୍ତଙ୍କୁ ଡରେଇକି ରଖିବ, ତମେ ପାଇଁକି କାହାକୁ ଡରିବ ? ତମେ ତ ଏ କଲୋନୀର ଦାଦା ।

ଭାନୁ : କେହି କାହାକୁ ଡରିବାରେ ଏଥିରେ କ'ଣ ଅଛି ?

କାବେରୀ : ଠିକ୍ ଅଛି । ଦରଖାସ୍ତଟା ଆପଣ ଚିରନ୍ତୁ କି ମୁ୍ନିସିପାଲ୍‌ଟିରେ ଦିଅନ୍ତୁ, ଆମର ସେଥିରେ କିଛି କହିବାର ନାହିଁ । ଦରଖାସ୍ତଟା

ଦେଖାନ୍ତୁ, ଆମ ବାବୁ ସେଥିରୁ ତାଙ୍କ ଦସ୍ତକତଟା କାଟି ଦିଅନ୍ତୁ । ଆମେ ଚାଲିଯିବୁ ।

ଉମା ଦେଇ ଦଉନା, ସିଏ ତାଙ୍କ ଦସ୍ତକତ କାଟି ଦେଇ ଚାଲିଯାଆନ୍ତୁ ।

ଗୁମାନ ହଁ ଦେଇ ଦିଅନ୍ତୁ । ଏତେ ଝମେଲାରୁ କ'ଣ ମିଳିବ ? (ଭାନୁବାବୁ ଦରଖାସ୍ତଟାକୁ ବାହାର କରି ଟିପୟ ଉପରେ ରଖିଲେ)

କାବେରୀ : (ସ୍ମୃତିପ୍ରତି) କଲମ ବାହାର କର ।

ସ୍ମୃତି (ସାର୍ଟ ପକେଟ୍‌ରେ କଲମ ଖୋଜିଲେ କିନ୍ତୁ ପାଇଲେ ନାହିଁ ।) ନା, ମୁଁ କଲମ ଆଣିନେଇଁ ।

କାବେରୀ : ତମର ଏଇ ଅଗୁଆଁରିଆ ପଣରୁ କଲମଟା ଛାତି ପକେଟ୍‌ରେ ମାରିବାର ଅଧିକାର ତୁମଠୁ ଅନେକ ଦିନ ହେଲା କାଢ଼ି ନିଆଗଲାଣି । ତମର କ'ଣ ମନେ ନାହିଁ ? ମୋ ମୁହଁକୁ ଏମିତି ବଲ୍‌ବଲ୍‌କି ଅନେଇଚ କ'ଣ ? କଲମଟା ତମ ଗେଞ୍ଜିରେ ମରା ହେଇଚି ।

ସ୍ମୃତି (ସାର୍ଟର ବଟ୍‌ନ୍ ଖୋଲିଲେ)

କାବେରୀ : ହଁ, ସେଇଠି, ବାହାର କର ।

ସ୍ମୃତି ଆରେ ସତେତ । (ଗେଞ୍ଜିରୁ କଲମ ବାହାର କରି କାବେରୀଙ୍କୁ ବଢ଼ାଇ ଦେଲେ ।) ନିଅ ।

କାବେରୀ : ମୁଁ କ'ଣ କରିବି ?

ସ୍ମୃତି କ'ଣ କହୁଥିଲ ପରା ଦରଖାସ୍ତରୁ ଦସ୍ତକତ କାଟିବ ?

କାବେରୀ : ଦସ୍ତକତ କରିବ ତମେ ଆଉ କାଟିବି ମୁଁ ? ତମେ ଯା କାଟ ।

ଭାନୁ ଦସ୍ତକତ କାଟିବା ଦରକାର ନାହିଁ । ତମେ ଯଦି ଏତେ ଆପତ୍ତି କରୁଚ ଦରଖାସ୍ତଟା ମୁଁ ଆଉ ମ୍ୟୁନିସିପାଲ୍‌ଟିରେ ଦେବି ନାହିଁ ।

ସ୍ମୃତି ଦେବେ ନାହିଁତ ?

ଭାନୁ ନା, ଦେବି ନାହିଁ ।

ସ୍ମୃତି ଠିକ୍ ଅଛି । ଆଉ ତାହେଲେ ଆମର କିଛି ବିପଦ ନାହିଁ । ଚାଲ କାବେରୀ, ଆମେ ଘରକୁ ଯିବା ଚାଲ ।

କାବେରୀ : ତୁମେ ଖୁବ ନିର୍ବୋଧ ।

ସ୍ମୃତି ତମେ ଠିକ କହିଚ କାବେରୀ ! ଏକୁଟିଆ ମୁଁ ନୁହେଁ, ସମଗ୍ର

ପୁରୁଷ ଜାତିଟା ଦ୍ରୁତ ଗତିରେ ତାର ବୁଦ୍ଧି ହରାଇ ବସୁଚି । ଦିନ ଆସିବ ସବୁ ପରୁଷ ନିର୍ବୋଧ ପାଲଟି ଯିବେ ।

କାବେରୀ : ତମେ ଚୁପ୍‌କର । ଆଚ୍ଛା ଭାନୁବାବୁ ! ଆପଣ ସେ ଦରଖାସ୍ତଟା ମୁନିସିପାଲ୍‌ଟିରେ ଦେବେ ନାହିଁ ତ ?

ଭାନୁ ନା ।

ଗୁମାନ ନା, ଆଉ ଦେବାର ଆଦୌ ସମ୍ଭାବନା ନାହିଁ ।

କାବେରୀ : ତାହେଲେ ସେ ଦରଖାସ୍ତଟା ମୋତେ ଦେଇ ଦିଅନ୍ତୁ ।

ଉମା ତମକୁ କାହିଁକି ଦିଆଯିବ ? ସେଟା କ'ଣ ଏକୁଟିଆ ତମର ?

କାବେରୀ : ସେଟାବି ଏକୁଟିଆ ତମର ନୁହଁ ।

ଉମା ଆମେ ଲେଖିଚୁ, ସେଟା ଏଇଠି ରହିବ । ଅଲବତ ରହିବ ।

କାବେରୀ : କେମିତି ରଖିବ ଦେଖିବା ।

(କାବେରୀ ଦରଖାସ୍ତଟିକୁ ଟିପୟ ଉପରୁ ଝାଂପି ନେଲାବେଳେ ଭାନୁବାବୁ, ଗୁମାନବାବୁ ଓ ଉମା ଦରଖାସ୍ତଟାକୁ ତାଙ୍କ ହାତରୁ ଛଡାଇ ନେବାକୁ ଚେଷ୍ଟା କରିଛନ୍ତି । ଦରଖାସ୍ତଟାକୁ ପ୍ରତ୍ୟେକେ ନିଜ ଆଡକୁ ଟାଣିଚନ୍ତି । ଭାନୁ ପାଟିକରିଛନ୍ତି ଚିରିଯିବ, ଚିରିଯିବ । ଦରଖାସ୍ତଟା ଚାରିଖଣ୍ଡ ହୋଇ ଚିରିଯାଇଛି ଏବଂ ପ୍ରତ୍ୟେକଙ୍କ ହାତରେ ଖଣ୍ଡେ ଖଣ୍ଡେ ଚିରା ଦରଖାସ୍ତ ରହିଯାଇଛି ।)

ଭାନୁ ଇଏ ଆପଣ କ'ଣ କଲେ ।

କାବେରୀ : ମୁଁ ଯାହା କରିଚି ଠିକ୍ କରିଚି ।

(ସ୍ମୃତିବାବୁଙ୍କୁ ସିଏ ଧରିଥିବା ଚିରା ଦରଖାସ୍ତ ଖଣ୍ଡକ ବଢ଼ାଇ ଦେଇ) ନିଅ ଦେଖ ଏଥିରେ ତମ ଦସ୍ତକତ ଅଛି ?

ସ୍ମୃତି ନା, ଏଥିରେ ମୋ ଦସ୍ତକତ ନାହିଁ ।

ଉମା ଆଉ ଠିଆ ହେଇ କାହିଁକି ? ଯାହା ପାଇଲ ସେତକ ଧରିକି ଯାଉନ ?

(କାବେରୀ ହଠାତ ଯାଇ ଗୁମାନ ବାବୁଙ୍କ ହାତରେ ଥିବା ଦରଖାସ୍ତ ଟୁକୁଡାଟି ଝାଂପି ଆଣିଲେ ।)

ଗୁମାନ ଆରେ ଇଏ କ'ଣ, ଇଏ କ'ଣ ?

କାବେରୀ : ଦେଖ ଏଥିରେ ଥାଇ ପାରେ ।

ସ୍ମୃତି (ଦେଖିଲେ) ନା, ଏଥିରେ ବି ନାହିଁ ।

କାବେରୀ (ଉମାଙ୍କ ହାତରେ ଥିବା ଦରଖାସ୍ତ ଟୁକୁଡା ପ୍ରତି ନଜର ପକାଇବା କ୍ଷଣି ଉମା ତାହା ଲୁଚାଇ ଦେଲେ । କାବେରୀ ଏଥର ଭାନୁବାବୁଙ୍କ ହାତରୁ ଦରଖାସ୍ତ ଟୁକୁଡାଟା ଝାଂପି ନେଲେ ଓ ତାହାକୁ ସ୍ମୃତିବାବୁଙ୍କ ହାତକୁ ବଢ଼ାଇ ଦେଲେ ।) ଦେଖିଲ, ଏଥିରେ ଥାଇପାରେ ।

ସ୍ମୃତି ହଁ, ଏଇଥିରେ ଅଛି ।

କାବେରୀ : କାଟ, ଶୀଘ୍ର ଦସ୍ତକତଟା କାଟ, ଆମେ ଯିବା ।

ସ୍ମୃତି କାଟୁଚି । (ସ୍ମୃତିବାବୁ ଦରଖାସ୍ତଟିକୁ ଟିପୟ ଉପରେ ଥୋଇ ନିଜ ଦସ୍ତକତ କାଟିଲେ ।)

କାବେରୀ : ଭଲ ଭାବରେ କାଟ ।

ସ୍ମୃତି କାଟିଲି ।

କାବେରୀ ସେ କଟାଟା ମତେ ଦେଖା ।

ସ୍ମୃତି ନିଅ ଦେଖ । (ସବୁତକ ଦରଖାସ୍ତ ଟୁକୁଡା କାବେରୀଙ୍କ ହାତକୁ ବଢ଼ାଇ ଦେଲେ ।)

କାବେରୀ (କାବେରୀ ଦରଖାସ୍ତ ଟୁକୁଡାରୁ ସ୍ମୃତିବାବୁଙ୍କ ନାଆଁ କଟା ଯାଇଥିବା ଦେଖିଲେ ।) ବୁଝିଲେ ଆଜ୍ଞା ! ଇଏ ଆମର ଭାରି ସରଳ ଲୋକ । ଯୋଉଠି ପାରେ ସେଠି ଦସ୍ତକତ କରିଦେବାକୁ ଭାରି ଭଲ ପାଆନ୍ତି । ୟାଙ୍କର ଧାରଣା ଯେତେ ଅଧିକ ଦସ୍ତକତ କରିବ ଅକ୍ଷର ସେତେ ସୁନ୍ଦର ହେବ । ବୋକା ।
(ଏତିକି ବେଳେ କୁନୁ ଓ ସୁନୁ ଆଉ ଘରୁ ଆସିଲେ ।)

କାବେରୀ : ଆଲୋ ସୁନୁ ! ତୁ ଏଠି କ'ଣ କରୁଚୁ ?

ସୁନୁ ମୁଁ କୁନୁନାନୀ ସାଙ୍ଗରେ ଖେଳୁଚି ।

କାବେରୀ ଚାଲ ଚାଲ ଘରକୁ ଚାଲ ।

ସୁନୁ ନାଇଁ ମୁଁ ଏବେନେ ଯିବି ନେଇଁ । ମୁଁ ପଛେ ଯିବି ।

କାବେରୀ ଚାଲୁଚୁନା, ଦେଖିବୁ ଏଇନେ ।

କୁନୁ ଥାଉ ମାଉସୀ ! ଆମେ ଖେଳି ସାରିବା ପରେ ମୁଁ ନେଇକି ତାକୁ ଘରେ ଛାଡି ଦେଇ ଆସିବି ।

କାବେରୀ ନାଇଁ, ନାଇଁ ସିଏ ଏବେନେ ମୋ ସାଙ୍ଗରେ ଯିବ ।

ସୁନୁ ନାଇଁ, ମୁଁ ଯିବି ନେଇଁ ।

କାବେରୀ : ଚାଲୁଚୁନା ।

(ସୁନୁ ନଯିବାକୁ କାନ୍ଦୁଥାଏ, କିନ୍ତୁ କାବେରୀ ତାକୁ ଜୋର ଯବର ଦସ୍ତ ନେଇ ଯାଉଥିଲେ ।)

ଉମା ଦସ୍ତକତ ତ କାଟିଲ, ଦରଖାସ୍ତ ଖଣ୍ଡଗୁଡା କୁଆଡେ ନେଇଯାଉଚ ?

କାବେରୀ : ନିଅ ତମ ସମ୍ପତ୍ତି ।

(ଦରଖାସ୍ତ ଟୁକୁଡାତକ ଟିପୟ ଉପରେ ଥୋଇ ଦେଲେ । ସ୍ମୃତି ଉମାଙ୍କ ମୁହଁକୁ ଅନାଇଁ ଠିଆହୋଇଥିଲେ ।)

କାବେରୀ : ତାଙ୍କ ମୁହଁକୁ ଅନେଇଁ କ'ଣ ଦେଖୁଛ ? ଘରକୁ ଚାଲ ।

ସ୍ମୃତି ଯାଉଚି ।

(ସ୍ମୃତି, କାବେରୀ ଓ ସୁନୁ ଚାଲିଗଲେ । ଉମା ଓ କୁନୁ ମଧ ଘର ଭିତରକୁ ଚାଲିଗଲେ । ଗୁମାନବାବୁ ସେ ଦରଖାସ୍ତ ଟୁକୁଡା ଭିତରୁ ନିଜ ଦସ୍ତକତଟା କାଟିଲେ । ସବୁଟୁକୁଡାକୁ ଏକାଠି କରି ଭାନୁବାବୁଙ୍କ ହାତକୁ ବଢ଼ାଇ ଦେଲେ ।)

ଗୁମାନ ନିଅନ୍ତୁ । ମୁଁ ବି ମୋ ଦସ୍ତକତଟା କାଟିଦେଇଚି । ମୁଁ ଏବେ ଯାଉଚି । ଆପଣ ଯାହା କରିବା କଥା ନିଜେ କରିବେ । ଏ ଝମେଲା ଭିତରକୁ ଆଉ ମୋତେ ଟାଣିବେ ନାହିଁ । (ପ୍ରସ୍ଥାନ)

(ଭାନୁବାବୁ ସେ ଦରଖାସ୍ତ ଖଣ୍ଡଗୁଡାକୁ ଧରି ଠିଆ ହୋଇଥିଲେ । ଭିତରୁ ଆସିଲେ ଉମା ।)

ଉମା (ପ୍ରବେଶି) ଆଉ କାଇଁକି ଠିଆ ହେଲ ? ସେତକ ନେଇ ମୁନିସିପାଲିଟି ଅଫିସିରେ ଦେଇଦେବ ଯା । (ପ୍ରସ୍ଥାନ)

ଭାନୁ ଉମା ! (ଉମାଙ୍କ ପଛେ ପଛେ ଯାଉ ଯାଉ ଭାନୁବାବୁଙ୍କ ହାତରୁ ସେ ଦରଖାସ୍ତ ଖଣ୍ଡତକ ତଳେ ଖସି ପଡିଲା । ତାକୁ ଖୁବ୍ ଆବେଗର ସହିତ ପୁଣି ତଳୁ ଗୋଟାଇଲେ ଭାନୁବାବୁ । ଧୀରେ ଧୀରେ ମଞ୍ଚ ଅନ୍ଧକାର ହେଲା ।)



ଆନଂଦ ଚଂନ୍ଦ୍ର ପହି

# ତୃତୀୟ ଦୃଶ୍ୟ

(ମଞ୍ଚ ଆଲୋକିତ ହେବାବେଳେ ଦେଖାଗଲା ଭାନୁବାବୁ ସୋଫା ଉପରେ ବସି ଖଣ୍ଡ ବିଖଣ୍ଡିତ ଦରଖାସ୍ତଟିକୁ ସେଲୋଟେପ୍ ଲାଗଇ ଯୋଡୁଛନ୍ତି । କଲିଂବେଲ ବାଜିଲା । ଭାନୁବାବୁ ଦରଖାସ୍ତଟିକୁ ଯତ୍ନରେ ନିଜ ଛାତି ପକେଟ୍‌ରେ ରଖି କବାଟ ଖୋଲିଲେ । ଘର ଭିତରକୁ ଆସିଲେ ପଡୋଶୀ ଦିଲ୍ଲୀପବାବୁ ।)

ଭାନୁ    ଆରେ ଦିଲ୍ଲୀପ ବାବୁ । ଆସନ୍ତୁ । ବସନ୍ତୁ । ଆମେ ସବୁ ଏଇ ଗୋଟିଏ କଲୋନୀରେ ରହୁଛେ କିନ୍ତୁ ମୋଟେ ଦେଖା ହେଉନାହିଁ ।

(ଦୁହେଁ ଦୁଇଟି ଚେୟାରରେ ବସିଲେ ।)

ଭାନୁ    କୁଆଡେ କେମିତି ଆସିଥିଲେ ?

ଦିଲ୍ଲୀପ    ଏଇ.... ଆପଣଙ୍କଠି ମୋର ଗୋଟେ ଜରୁରୀ କାମ ଥିଲା ।

ଭାନୁ    କି କାମ ଥିଲା କୁହନ୍ତୁ । ମୁଁ ଯଦି ଆପଣଙ୍କର କିଛି ସେବା କରିପାରେ ତାହେଲେ ନିଜକୁ ଭାଗ୍ୟବାନ ବୋଲି ମନେ କରିବି ।

ଦିଲ୍ଲୀପ    ସେଇ ଯୋଉ ଦରଖାସ୍ତଟା ଗୁମାନବାବୁ କଲୋନୀରେ ବୁଲାଉଥିଲେ ଦସ୍ତକତ କରିବା ପାଇଁ.....

ଭାନୁ    (ରାଗିଯାଇ) ଏଇ କଥା କହିବାକୁ ଏତେ ଗୌରଚନ୍ଦ୍ରିକା କାହିଁକି ? ଦରଖାସ୍ତରୁ ନିଜ ଦସ୍ତକତ କାଟିବାକୁ ଆସିଥିଲେ ତ ? ଠିକ୍ ଅଛି, ନିଅନ୍ତୁ । (ଦରଖାସ୍ତଟା ବଢ଼ାଇ ଦେଲେ)

ଦିଲ୍ଲୀପ    ଏଇଟା କ'ଣ ? ଏମିତି ସେଲୋଟେପ୍ କ'ଣ ପଡିଚି ?

ଭାନୁ    ଏଇଟା ସେଇ ଦରଖାସ୍ତ । ଖଣ୍ଡ ଖଣ୍ଡ ହେଇ ଚିରିଯାଇଥିଲା, ଆପଣ ଆସିବା ଆଗରୁ ମୁଁ ତାକୁ ସେଲୋଟେପ୍ ଲଗାଇ

ଯୋଡିଛି । ଠିକ୍ ଅଛି, ନିଅନ୍ତୁ । ଶୀଘ୍ର ଏଥିରୁ ନିଜ ଦସ୍ତକତ କାଟିଦେଇ ଚାଲି ଯାଆନ୍ତୁ ।

ଦିଲ୍ଲୀପ ନାଇଁ, ମୁଁ କ'ଣ କହୁଥିଲି କି....

ଭାନୁ ଆଉ କିଛି ଶୁଣିବାକୁ ମୋର ଧୈର୍ଯ୍ୟ ନାହିଁ । କଲମ ନିଅନ୍ତୁ, ଦରଖାସ୍ତଟା ଧରନ୍ତୁ । ନିଜ ଦସ୍ତକତଟା କାଟନ୍ତୁ, ଆଉ ଶୀଘ୍ର ଚାଲି ଯାଆନ୍ତୁ ।

ଦିଲ୍ଲୀପ ମୋ ଉପରେ ଆପଣ ଅଯଥା ରାଗନ୍ତୁ ନାହିଁ । ରାଗଟା ମୋଟେ ଭଲ ଜିନିଷ ନୁହଁ । ଆପଣଙ୍କ ବ୍ଲଡପ୍ରେସର ବଢ଼ିଯାଇପାରେ ।

ଭାନୁ ମୋର ମୋଟେ ବ୍ଲଡପ୍ରେସର ନାହିଁ, ଆପଣ ସେ ବିଷୟରେ ନିଶ୍ଚିନ୍ତ ରୁହନ୍ତୁ ।

ଦିଲ୍ଲୀପ ମୁଁ ଜଣେ ନିହାତି ଭୟାଳୁ ଲୋକ ଭାନୁବାବୁ । ଥାନା, ମଡରକେଶ୍, ସେ ସବୁ ମହା ଝମେଲା କଥା । ମତେ ସେଥିରେ ପୂରାନ୍ତୁ ନାହିଁ । ମୁଁ ବିଚରା ନିହାତି ନିରିହ ମେଷଟିଏ ।

ଭାନୁ ନିଜକୁ ଭୟାଳୁ କହିବାକୁ ଆପଣଙ୍କୁ କିଛି ଖରାପ ଲାଗୁନାହିଁ ?

ଦିଲ୍ଲୀପ ସତ କହିବାକୁ ମୋର କୁଣ୍ଠାନାହିଁ କି ଲଜ୍ଜା ନାହିଁ । ମୋ ଜାଣିବାରେ ସମସ୍ତେ ଭୟାଳୁ । କିନ୍ତୁ ସମସ୍ତେ ନିର୍ଭିକର ଅଭିନୟ କରନ୍ତି ।

ଭାନୁ ସମସ୍ତେ ଭୟାଳୁ ?

ଦିଲ୍ଲୀପ ମୁଁ ମୁକ୍ତ କଣ୍ଠରେ କହିବି, ଏ ପୃଥିବୀର ସମସ୍ତେ ଭୟାଳୁ । ଭୟ ମଣିଷର ସୁରକ୍ଷା କବଚ । ଯେଉଁମାନଙ୍କର Security Guard ନାହାଁନ୍ତି, ସେମାନଙ୍କ ଭୟ ସେମାନଙ୍କୁ ରକ୍ଷା କରେ । ଆଉ ଯେଉଁମାନଙ୍କର Security Guard ଅଛନ୍ତି, ସେମାନଙ୍କର ଭୟ ଅଛି ବୋଲି ତ ସେମାନଙ୍କ ସୁରକ୍ଷା ପାଇଁ Security Guard ନିଯୁକ୍ତି କରାଯାଇଛି ।

ଭାନୁ ଚମତ୍କାର ଯୁକ୍ତି ।

ଦିଲ୍ଲୀପ ଭୟ ମଣିଷକୁ ଶୃଙ୍ଖଳା ଶିକ୍ଷାଦିଏ ? ମଣିଷ ଶିଶୁ ଅବସ୍ଥାରେ ତାର ବାପା, ମାଆ ଓ ଗୁରୁଜନଙ୍କୁ ଡରେ । ବଡହେଲେ ଆଇନ, କାନୁନ ଓ ପୋଲିସ୍‌କୁ ଡରେ । ସମସ୍ତଙ୍କୁ ଡରୁଥିବା ମଣିଷ ଶୃଙ୍ଖଳିତ ଓ ସାମାଜିକ । ଯାହାର କାହାକୁ ଡର ନାହିଁ ସିଏ

ଅସାମାଜିକ, ବିଶୃଙ୍ଖଳିତ ।

ଭାନୁ ଅଟକିଲେ କାହିଁକି କୁହନ୍ତୁ ।

ଦିଲ୍ଲୀପ ଯେଉଁ ଛାତ୍ର ଶିକ୍ଷକଙ୍କୁ ଭୟ ନକରେ ସିଏ ଦେଶରେ ତୁଟତରାଜ, ଦଙ୍ଗା ହେଙ୍ଗାମ କରିଚାଲେ । ଯେଉଁ ମଣିଷ, ଆଇନ, କାନୁନ, ପୋଲିସ୍ ଆଉ ଶୃଙ୍ଖଳାକୁ ନଡରେ ସିଏ ଦୁର୍ଦ୍ଦାନ୍ତ, ଦୁର୍ଦ୍ଧର୍ଷ, ଉଗ୍ରପନ୍ଥୀ ଓ ସନ୍ତ୍ରାସବାଦୀ ସାଜେ । ତେଣୁ ଆମର ଡରୁଆ ମଣିଷ ଦରକାର । ଡରୁଆ ମଣିଷ ସର୍ବଦା ଭଦ୍ର, ନମ୍ର, ସମ୍ଭ୍ରାନ୍ତ ଓ ସୁଶୀଳ ।

ଭାନୁ ନା ଦିଲ୍ଲୀପ ବାବୁ ! ସେମିତି ଡରୁଆ ମଣିଷ ମେରୁଦଣ୍ଡହୀନ । ସେମାନଙ୍କର ସ୍ୱାଭିମାନ ନଥାଏ, ଆତ୍ମ ସମ୍ମାନ ନଥାଏ । ସେମାନେ ହିପୋକ୍ରେଟସ୍, ସ୍ୱାର୍ଥପର, ସୁବିଦାବାଦୀ ।

ଦିଲ୍ଲୀପ ହଉ, ଠିକ୍ ଅଛି । ଆପଣ ମୋ କଥା ଗ୍ରହଣ ନ କରନ୍ତୁ ।

ଭାନୁ କେବଳ ମୁଁ ନୁହଁ, ଆପଣଙ୍କ ମତକୁ ଅନ୍ୟ କେହି ଗ୍ରହଣ କରିବେ ନାହିଁ ।

ଦିଲ୍ଲୀପ ସେ ବିଷୟରେ ମୋ ବିଶ୍ୱାସ ମୋର, ଆପଣଙ୍କ ବିଶ୍ୱାସ ଆପଣଙ୍କର । ଏଥର ପ୍ରକୃତ ପ୍ରସଙ୍ଗ ଉପରକୁ ଆସନ୍ତୁ । ଦରଖାସ୍ତରୁ ମୋ ଦସ୍ତକତଟା କାଟି ଦିଅନ୍ତୁ, ମୁଁ ଚାଲିଯାଏ ।

ଭାନୁ ନିଅନ୍ତୁ । ଆପଣ ନିଜ ହାତରେ ନିଜ ଦସ୍ତକତ କାଟନ୍ତୁ, ଆଉ ଚାଲି ଯାଆନ୍ତୁ ।

ଦିଲ୍ଲୀପ ମୁଁ ପ୍ରଥମରୁ କହିଛି, ମୁଁ ଡରୁଆ ମେଣ୍ଢାଟିଏ । ଦସ୍ତକତଟା ନିଜ ହାତରେ କାଟିବାକୁ ମଧ ଡର ଲାଗୁଚି । ଆପଣଟିକେ କାଟିଦିଅନ୍ତୁ ।

ଭାନୁ (ଦରଖାସ୍ତଟା ଟିପୟ ଉପରେ ପକାଇ ଦିଲ୍ଲୀପବାବୁଙ୍କ ଦସ୍ତକତଟା କାଟିଲେ) ଦେଖନ୍ତୁ, ଆପଣଙ୍କ ଦସ୍ତକତ କଟା ହେଇଗଲା । ଏଥର ନିର୍ଭୟରେ ଘରକୁ ଯାଆନ୍ତୁ ।

ଦିଲ୍ଲୀପ ଧନ୍ୟବାଦ । ମୁଁ ଯାଉଛି କିନ୍ତୁ ନିର୍ଭୟରେ ନୁହଁ । ମନରେ ଭୟ ରଖି । (ପ୍ରସ୍ଥାନ)

ଭାନୁ (ଦିଲ୍ଲୀପଙ୍କ ଯିବା ବାଟକୁ ଚାହିଁ) ଡରୁଆ ।

(ଭାନୁବାବୁ ପୁଣିଥରେ ଦରଖାସ୍ତଟାକୁ ଭଲ ଭାବରେ

ଯୋଡିବାକୁ ସୋଫାଚେୟାରରେ ବସିଲେ । ଦରଖାସ୍ତଟାକୁ ଏପଟ ସେପଟ କରି ଦେଖିଲେ । ଆଉ ଖଣ୍ଡେ ସେଲୋଟେପ୍ ପକାଇଲେ । ଏହି ସମୟରେ ପୁଣି କଲିଂବେଲ୍ ବାଜିଲା ଦରଖାସ୍ତଟାକୁ ପକେଟ୍‌ରେ ପୂରାଇ କବାଟ ଖୋଲିଲେ । ଘର ଭିତରକୁ ପଶି ଆସିଲା ଜଣେ ଦୁର୍ଦ୍ଦାନ୍ତ ଗୁଣ୍ଡା ।)

ସରୋଜ — ଏଇଟା କ'ଣ ଭାନୁ ପ୍ରକାଶ ଜେନାଙ୍କ ଘର ?

ଭାନୁ — ହଁ, କ'ଣ ଦରକାର ଥିଲା ?

ସରୋଜ — (ସୋଫାଉପରେ ବସି ଓ ଟିପୟ ଉପରେ ଗୋଡ ରଖି ।) ଆପଣ ଭାନୁବାବୁ ?

ଭାନୁ — ହଁ, କ'ଣ ହେଲା ?

ସରୋଜ — ଆପଣ କେବେଠୁ ଏ କଲୋନୀରେ ନେତାଗିରୀ କଲେଣି ?

ଭାନୁ — ନେତାଗିରୀ ?

ସରୋଜ — ନେତାଗିରୀ କ'ଣ ଜାଣି ନାହାଁନ୍ତି ? ବେଶି ଟାଉଟି ଦେଖାଇଲେ ପରିଣତି କିଛି ଭଲ ହେବ ନାହିଁ ।

ଭାନୁ — ମୁଁ ଆପଣଙ୍କ କଥା କିଛି ବୁଝିପାରୁ ନାହିଁ ।

ସରୋଜ — ସିନେମା ଦେଖିଛନ୍ତି ?

ଭାନୁ — ଦେଖିଚି, କ'ଣ ହେଲା ?

ସରୋଜ — ସିନେମାର ଫାଇଟିଙ୍ଗ୍ ଦେଖିଚନ୍ତି ?

ଭାନୁ — ଏସବୁ କାହିଁକି ପଚାରୁଚନ୍ତି ?

ସରୋଜ — ବେଶି ବକ୍ ବକ୍ ନହୋଇ ମୁଁ ଯାହା ପଚାରୁଚି ତାର ଠିକ୍ ଠିକ୍ ଉତ୍ତର ଦିଅନ୍ତୁ ।

ଭାନୁ — (ଭୟ ପାଇଯାଇ) ପଚାରନ୍ତୁ ।

ସରୋଜ — ସିନେମା ଫାଇଟିଙ୍ଗ୍‌ର ଢ଼ିସିଙ୍ଗ୍, ଢ଼ିସିଙ୍ଗ୍ ଦେଖିଚନ୍ତି ?

ଭାନୁ — ଦେଖିଚି ।

ସରୋଜ — ସେଇ ଢ଼ିସିଙ୍ଗ୍, ଢ଼ିସିଙ୍ଗ୍ ମୁଥରୁ ଦିଗଣ୍ଡା ବସିଗଲେ ସବୁ ସତକଥା ବାହାରି ପଡିବ ଆଉ ନେତାଗିରୀ ଛାଡିଯିବ ।

ଭାନୁ — ଆପଣ କିଏ ?

ସରୋଜ — ମତେ ଚିହ୍ନି ନାହାଁନ୍ତି ? ମୁଁ ଏ କଲୋନୀର ବୋନାଫାଏଡ ବାସିନ୍ଦା ପଦ୍ମଜ ପଟ୍ଟନାୟକଙ୍କ ସାନଭାଇ ସରୋଜ

ପଟ୍ଟନାୟକ ? ବସନ୍ତୁ ବସନ୍ତୁ । ଆରେ ଉମା ! ଉମା !

ଉମା (ଘର ଭିତରୁ) କ'ଣ ହେଲା ?

ଭାନୁ ଆରେ ଏଇ ସରୋଜବାବୁ ଆସିଚନ୍ତି, ଚା ଆଣ ।

ଉମା (ଘର ଭିତରୁ) ନଉଚି ।

ଭାନୁ ଆପଣ ଆମ ପଦ୍ମଜବାବୁଙ୍କ ସାନ ଭାଇ, ଆପଣ ସେଇକଥାଟା ପ୍ରଥମରୁ କହୁ ନାହାଁନ୍ତି । ମୁଁ ଭାବିଲି....

ସରୋଜ କ'ଣ ଭାବିଲେ ?

ଭାନୁ ନାଇଁ, ଏଇ...

ସରୋଜ କ'ଣ ଭାବିଲେ କହୁ ନାହାଁନ୍ତି ? ଯାହା କହିବା କଥା ସିଧା କୁହନ୍ତୁ ।

ଭାନୁ (ନୀରବ)

ସରୋଜ କ'ଣ ଗୁଣ୍ଡା, ବଦମାସ ନା ସଂନ୍ତ୍ରାସବାଦୀ ?

ଭାନୁ ନା, ଏସବୁ କିଛି ନୁହଁ ।

!ରୋଜ କ'ଣ ଗୁଣ୍ଡା, ବଦମାସ କହିବା ପାଇଁ ସାହାସ ହେଉ ନାହିଁ ? ଠିକ୍ ଅଛି, ମୁନିସିପାଲ୍‌ଟିକୁ ଦେବାପାଇଁ ଯେଉଁ ଦରଖାସ୍ତଟା ଲେଖିଥିଲେ ସେଟା କ'ଣ ହେଲା ?

ଭାନୁ ଆପଣ ସେଟା କ'ଣ କରିବେ ?

ସରୋଜ ସେଥିରୁ ମୋ ବଡଭାଇ ପଦ୍ମଜ ପଟ୍ଟନାୟକଙ୍କ ଦସ୍ତକତଟା କାଟି ଦିଅନ୍ତୁ ।

ଭାନୁ କିନ୍ତୁ କାହିଁକି ?

ସରୋଜ ସେ କାହିଁକି ଫାଇଁକିର କୈଫିୟତ ମୁଁ ଦେବାକୁ ବାଧ୍ୟ ନୁହଁ । ପୋଲିସ ହାତରେ ସେ ଦରଖାସ୍ତ ପଡିଲେ ଖୁବ ବିପଦ ।

ଭାନୁ ପୋଲସି ପାଖରେ କିଛି ଆପରି ଅଭିଯୋଗ କରିବା କ'ଣ ବିପଦ ?

ସରୋଜ ପୋଲସ ହାତରେ ଯାହା ନାଆଁ ପଡିବ ସିଏ ସନ୍ଦେହ ଘେର ଭିତରକୁ ଚାଲିଯିବ । ସାରୁ ଖୋଳୁ ଖୋଳୁ ମହାଦେବ ବାହାରିବେ ।

ଭାନୁ ସାରୁ ଖୋଳୁ ଖୋଳୁ କ'ଣ ମହାଦେବ ବାହାରିବେ ?

ସରୋଜ ଏ କଲୋନୀର ଯେତେଲୋକ ଭଦ୍ରମୁଖା ପିନ୍ଧି ଚଳପ୍ରଚଳ

ହେଉଛନ୍ତି ସେମାନେ କେହି ଭଦ୍ରଲୋକ ନୁହଁନ୍ତି, ସମସ୍ତେ ଭଦ୍ରମୁଖା ପିନ୍ଧାଲୋକ ।

ଭାନୁ	ମାନେ ?

ସରୋଜ	ମାନେଟା ଅତି ସହଜ । ଏଠି କିଏ ଚାକିରି ସହିତ ଉପୁରି ଚିପୁଡ଼ିଛିତ କିଏ ଚାକିରିକି ମୂଳକରି ଅଫିସିଆଲ ପ୍ରଭାବ ବିସ୍ତାର କରି ବ୍ୟବସାୟ କରୁଛି । କାହାର ଦୋନମ୍ବରି ଧନ୍ଦା ଅଛିତ, ଆଉ କିଏ କି ଭଳି ଜଘଣ୍ୟ ଅପରାଧରେ ଲିପ୍ତ ସେକଥା ସମସ୍ତଙ୍କ କଳ୍ପନା ବାହାରେ ।

ଭାନୁ	ଏଠିକାର ସବୁଲୋକ ଯଦି ଆପଣଙ୍କ ବିଚାରରେ ଅପରାଧୀ ହୁଅନ୍ତି ତାହେଲେ ଆପଣ...

ସରୋଜ	ମୋ କଥା ଶୁଣିଲେ ଆପଣ ଭୟ ପାଇଯିବେ । ମୁଁ ଜଣେ ବେକାର । ଆମେ ବେକାରମାନେ ଯେକୌଣସି କାମ କରିବାକୁ ପଛେଇବୁ ନାହିଁ । ଲୁଟ, ତରାଜ, ଦଙ୍ଗା ହେଙ୍ଗମ, ନରହତ୍ୟା । (ହଠାତ୍ ପଛ ପକେଟ୍‌ରୁ ଗୋଟେ ଛୁରୀ ବାହାର କଲା)

ଭାନୁ	(ଭୟଭୀତ ହୋଇ ଥରିଲେ) ଆରେ ଆପଣ ଇଏ କ'ଣ କରୁଛନ୍ତି ? ଆପଣପରା ଆମ ପଦ୍ମଜବାବୁଙ୍କ ସାନଭାଇ ?

ସରୋଜ	ଚୁପ୍‌ଚାପ୍ ସେ ଦରଖାସ୍ତଟା ବାହାର କରନ୍ତୁ । Be quick ଶୀଘ୍ର ବାହାର କରନ୍ତୁ ।

ଭାନୁ	ଉମା ! (ଧାଇଁକି ଘର ଭିତରକୁ ଚାଲିଯାଉଥିଲା)

ସରୋଜ	(ଚିତ୍କାର କରି ଛୁରୀ ଦେଖାଇ) ସେଇଠି ଠିଆ ହୁଅ । ପଳାଇବାକୁ ଚେଷ୍ଟାକଲେ ଗଣ୍ଡିରୁ ମୁଣ୍ଡଟାକୁ ଅଲଗା କରିଦେବି ।

ଉମା	(ଚା' ଧରିକି ଆସି ହଠାତ୍ ସରୋଜ ହାତରେ ଛୁରୀ ଦେଖି ଚିତ୍କାର କଲେ) ଏ ମାଆ ! ଇଏ କଣ ? ଡା.... ଡା.... ଡାକୁ । କିଏ କୋଉଠି ଅଛ ଧାଇଁ ଆସ । ଆମ ଘରେ ଚୋ..... ଚୋ..... ।

ସରୋଜ	ଯେତେ ଜୋର୍‌ରେ ପାଟି କରିବେ କରନ୍ତୁ । ଚିତ୍କାର କରି ତଣ୍ଟି ଫଟାଇ ଦେଲେ ବି କେହି ଆପଣଙ୍କୁ ସାହାଯ୍ୟ କରିବାକୁ ଆସିବେ ନାହିଁ । ଏଠି ସମସ୍ତେ ଡରୁଆ । ଆପଣମାନଙ୍କ ଡରକୁ

ପୁଞ୍ଜିକରି ଆମର ଏ ଛୁରୀ ଧରା ।
(ଉମା ଆଣିଥିବା ଚା କପ୍‌ଟା ତା ଠାରୁ ଆଣି ପିଇଲା) ଶୀଘ୍ର ଦରଖାସ୍ତଟା ବାହାର କରନ୍ତୁ ।

ଉମା  ଦେଇ ଦଉନା ?

ଭାନୁ  (ଦରଖାସ୍ତଟା ପକେଟ୍‌ରୁ ବାହାର କରି) ହେଇ ନିଅ ।

ସରୋଜ  ମୋ ପକେଟ୍‌ରେ କଲମ ନାହିଁ । ଆପଣ ଦରଖାସ୍ତରୁ ମୋ ଭାଇଙ୍କ ଦସ୍ତକତଟା କାଟିସାରି ମୋତେ ଦରଖାସ୍ତଟା ଦେଖାନ୍ତୁ ।

ଉମା :  କାଟି ଦିଅ ।
(ଭାନୁ ଟିପୟ ଉପରେ ଦରଖାସ୍ତଟାକୁ ପକାଇ ସେଥିରୁ ପଦ୍ମଜ ପଟ୍ଟନାୟକଙ୍କ ଦସ୍ତକତ କାଟିଲେ ।)

ଭାନୁ  (ଦରଖାସ୍ତଟା ଦେଖାଇଲେ) ଦେଖନ୍ତୁ । ହେଲାତ ?

ସରୋଜ  That's good ମୁଁ ଏଥର ଆସୁଛି ।
(ସରୋଜ ଫେରିଯିବା ବାଟକୁ ଭୟରେ ଭାନବାବୁ ଓ ଉମା କିଛି ସମୟ ଚାହିଁଲେ । ଉମା ଯାଇ କବାଟ ବନ୍ଦ କଲେ । ଭାନୁ ହାଲିଆ ହୋଇ ସୋଫା ଉପରେ ବସି ପଡିଲେ ।)

ଉମା  ତୁମକୁ ମନା କରୁଚି, ମୋ କଥା ଶୁଣିଲ ନାହିଁ । ଏବେ ସମ୍ଭାଳ ।

ଭାନୁ  ମତେ ମନ୍ଦେ ପାଣି ଦିଅ, ମୋ ତଣ୍ଟି, ଛାତି ଶୁଖି ଯାଉଛି ।

ଉମା  ସେ ଟୋକାଟାର ଚେହେରା ଯାହା ହେଇଚି, ମୋ ଚେତା ବୁଡି ଯାଇଥାନ୍ତା ।

ଉମା  ଉମା ! ପାଣି ।

ଉମା  ଦଉଚି । (ଘର ଭିତରକୁ ଗଲେ)

ଭାନୁ  ଓଃ, କି ଭୟଙ୍କର ସେ ଲୋକଟା ! ମୋ ଛାତି ପିଞ୍ଜରା ଭିତରେ ଫଡ ଫଡ ହେଉଥିବା ପକ୍ଷୀଟା ଆଉ ଟିକକେ ପଞ୍ଜୁରୀ ଛାଡି ଉପରକୁ ଉଡିଯାଇ ଥାଆନ୍ତା ।

ଉମା  (ପାଣି ଆଣି ଆସିଲେ) ନିଅ ।
(ଭାନୁ ଢ଼କ ଢ଼କ କରି ଗ୍ଲାସଟାଯାକ ପାଣି ପିଇଗଲେ ।)

ଭାନୁ  ଓହୋ ! ପ୍ରାଣଟା ବଞ୍ଚିଗଲା ।

ଉମା  ଦରଖାସ୍ତଟା ଏଥର ମତେ ଦିଅ ମୁଁ ଚିରିଦିଏ । ତମେ ଶାନ୍ତିରେ ବିଶ୍ରାମ କର ।

ଆନଂଦ ଚଂଦ୍ର ପହି

ଭାନୁ ନା, ଉମା ! ସେ ଦରଖାସ୍ତକୁ ରଖିଲେ ଯେତିକି ବିପଦ ତାକୁ ଚିରିଦେଲେ ତାଠୁ ଅଧିକ ବିପଦ ।

ଉମା ଚିରିଦେଲେ ପୁଣି କି ବିପଦ ?

ଭାନୁ ଯଦି ଆମେ ଦରଖାସ୍ତଟା ଚିରି ଦେବା, ତା ହେଲେ କେହି ହୁଏତ ସନ୍ଦେହ କରିବେ ମୁଁ ସେଟାକୁ ମୁନିସିପାଲିଟିକି ନହେଲେ ଥାନାକୁ ଦେଇ ଦେଇଚି ।

ଉମା ଆଉ ତାହେଲେ କ'ଣ କରିବା ?

ଭାନୁ କିଛି କରିବା ଦରକାର ନାହିଁ । ଦରଖାସ୍ତଟା ସେମିତି ଥାଉ । ଯାହାର ଯେତେବେଳେ ସନ୍ଦେହ ହେବ ସିଏ ଆସି ଦେଖିଯିବ ।

ଉମା ହଉ ନିଅ ତମ ସମ୍ପତ୍ତି ତମେ ସାଇତିକି ରଖ । ଆଜି ରବିବାର ଦିନଟା ପୂରା ମାଟି ହେଇଗଲା । ଚାଲଟିକେ ବିଶ୍ରାମ କରିବ ।

ଭାନୁ ସତରେ ଭାରି ହାଲିଆ ଲାଗିଲାଣି । ଯେତେବଡ କଲିଜାବାଲା ମଣିଷଟେ ହେଲେ ମଧ୍ୟ ଏମିତି ଭୟନଗରୀରେ କେଇଟା ଦିନ ରହିଲେ ସିଏ ନିଶ୍ଚୟ ଭୟାଳୁ ପାଲଟିଯିବ । ଆଚ୍ଛା, କୁନୁ କୁଆଡେ ଗଲା ?

ଉମା କାଇଁକି, ତାଠି କ'ଣ କାମଥିଲା ?

ଭାନୁ : ନାଇଁ କିଛି କାମ ନାହିଁ ଯେ, ହେଲେ ତାକୁତ କାଇଁ ମୁଁ ଦେଖୁନେଇଁ ?

ଉମା ଖେଳିବାକୁ ଯିବବୋଲି କାନ୍ଦୁଥିଲା, ମୁଁ ତାମୁ ମନାକଲି, ସିଏ ଶୋଇ ପଡିଚି । ଡାକି ଦେବି ?

ଭାନୁ ନାଇଁ ସିଏ ଶୋଉ ।

(ଏହି ସମୟରେ ପୁଣି କଲିଂବେଲ ବାଜିଲା)

ଉମା : ପୁଣି କିଏ ଆସିଲା ?

ଭାନୁ : ମୁଁ କେମିତି କହିବି ?

ଉମା ଭଲ କି ଦେଖିଲ ଦରଖାସ୍ତରେ ଆଉ କାହା ଦସ୍ତକତ ରହିଗଲା କି ?

ଭାନୁ (ଦରଖାସ୍ତଟା ପକେଟରୁ କାଢ଼ି ଦେଖିଲେ) ନା, ଆଉ କାହାର ନାହିଁ ।

ଉମା : ଆଉ ତାହେଲେ କିଏ ଆସିଲା ?

ଭାନୁ ଯିଏ ଆସୁଚି ଆସୁ ।

ଉମା ତମେ ସେ ଘରକୁ ଯା । ଯିଏ ଆସିବ ତାକୁ ମୁଁ ଠିଆ, ଠିଆ ବିଦା କରିଦେବି । ଦିନମାନ ଗୋଟେ ପାଇା ଲାଗିଚି । ଶାନ୍ତିରେ ଟିକେ ଶୁଆଇ, ବସାଇ ଦଉ ନାହାଁନ୍ତି । ତମେ ଗଲ ଯା ।
(ଉମା ଭାନୁଙ୍କୁ ଠେଲି ଠେଲି ରୋଷେଇ ଘରକୁ ନେଇଗଲେ । ପୁଣିଥରେ କଲିଂବେଲ୍ ବାଜିଲା । ଉମା ଯାଇ କବାଟ ଖୋଲିଲେ । ଘର ଭିତରକୁ ପଶି ଆସିଲେ ଜଣେ ପୋଲିସ୍ ଅଫିସର ।)

ପୋଲିସ୍ ଅଫିସର ଏଇଟା ଭାନୁପ୍ରକାଶ ଜେନାଙ୍କ ଘର ?

ଉମା (ଡରି ଡରି) ହଁ ।

ପୋଲିସ ଭାନୁବାବୁ ଘରେ ଅଛନ୍ତି ।

ଉମା ନାହାନ୍ତି ।

ପୋଲିସ କୁଆଡେ ଯାଇଚନ୍ତି ?

ଉମା ଅଫିସ ଯାଇଚନ୍ତି ।

ପୋଲିସ ଆଜିପରା ରବିବାର ? ଛୁଟିଦିନରେ କ'ଣ ଅଫିସ ଯାଇଚନ୍ତି ?

ଉମା (ହଡବଡେଇ ଯାଇ) ନା ।

ପୋଲିସ ଅଫିସ୍ ଯାଇଚନ୍ତି ବୋଲି କହୁଚନ୍ତି, ଯାଇ ନାହାଁନ୍ତି ବୋଲି କହୁଚନ୍ତି, କୋଉକଥା ଠିକ୍ ?

ଉମା ଏଇ.... କଥା କ'ଣ କି ତାଙ୍କ ଅଫିସ୍‌ରେ ଗୋଟେ କ୍ୟାଣ୍ଟିନ୍ ଅଛି । ସେଇ କ୍ୟାଣ୍ଟିନ୍‌ରେ ଗୋଟେ କ'ଣ ମିଟିଙ୍ଗ ଅଛି । ସେଇ କ୍ୟାଣ୍ଟିନ୍‌କୁ ଯାଇଚନ୍ତି ।

ପୋଲିସ କେତେ ବେଳୁ ଗଲେଣି ?

ଉମା ବାରଟା ବେଳୁ ।

ପୋଲିସ ଏବେତ ସଂଧ୍ୟା ହେଲାଣି, ଫେରି ଆସୁଥିବେ ହୁଏତ ।

ଉମା କ୍ୟାଣ୍ଟିନ ମିଟିଙ୍ଗ୍ ପରେ ଭୋଜିଥିଲା ବୋଲି କହୁଥିଲେ ।

ପୋଲିସ ଭୋଜିତ ଗୋଟେ କି ଦିଇଟାରେ ସରିଯାଇଥିବ ।

ଉମା ସେଠୁ ଆଉ କୁଆଡେ ଗୋଟେ ଯିବେ ବୋଲି କହୁଥିଲେ ତ... ହଁ ମନେ ପଡିଲା, ତାଙ୍କର କୋଉଁ ସାଙ୍ଗ ଘରକୁ ଯିବେ ।

ପୋଲିସ ରାତି ସାତଟା, ଆଠଟା ଭିତରେ ଫେରିବେ ତ ?

ଉମା ହଁ । ନା, ମୁଁ ସେ କଥା କହି ପାରିବି ନାହିଁ ।

ପୋଲିସ୍ (ଟିପୟ ଉପରୁ ଖବର କାଗଜ ଉଠାଇ) ଏଇଟା ଆଜିର ପେପରତ ? ଠିକ୍ ଅଛି ସିଏ ଯେତେବେଳେ ଆସୁଚନ୍ତି, ଆସନ୍ତୁ । (ଖବର କାଗଜ ପଢ଼ିବାକୁ ଲାଗିଲେ ଓ ହଠାତ ଉଠିପଡି ଝରକା ଆଡକୁ ଚାହିଁଲେ ।)
ଏଇ ଝରକାଟା କାହିଁକି ବନ୍ଦ୍ କରିଛନ୍ତି ? ଭାରି ସଫୋକେଟିଙ୍ଗ୍ ଲାଗୁଛି ଆଉ ଭେଣ୍ଟିଲେସନ ପ୍ରୋବ୍ଲେମ୍ ହେଉଛି । (ଝରକା ପାଖକୁ ଗଲେ ଏବଂ ଝରକାଟା ଖୋଲିବାକୁ ଉଦ୍ୟମ କଲେ ।)

ଉମା ଥାଉ, ଥାଉ ଝରକା ଖୋଲନ୍ତୁ ନାହିଁ । ସେପଟରୁ ଦୁର୍ଗନ୍ଧ ଆସିବ ।

ପୋଲିସ କାହିଁକି ? ସେପଟେ କ'ଣ ନର୍ଦ୍ଦମା ଅଛି କି ?

ଉମା ନାଇଁ 'ଯେ....

ପୋଲିସ ଆଉ ତାହେଲେ ଦୁର୍ଗନ୍ଧ କୁଆଡୁ ଆସିବ ?

ଉମା ଗୋଟେ ଶବ ପଡିଛି ।

ପୋଲିସ ଶବ ? କାହା ଶବ ?

ଉମା ଏଇ... ଏଇ ଗୋଟେ ମଲା ଗାଈର ଶବ ।

ପୋଲିସ (ଫୋନ ପାଖକୁ ଗଲେ) ମୁଁ ତାହେଲେ ପୋଲିସ୍ ଷ୍ଟେସନକୁ ଫୋନ୍ କରି ଦେଉଛି, ମୁନିସିପାଲ୍‌ଟିରେ ଖବର ଦେଇଦେବେ । ସେମାନେ ମଲାଗାଈଟାକୁ ଉଠାଇ ନେବେ ।

ଉମା ଫୋନ୍‌ଟା ଏକ ତରଫା ହେଇ ଯାଇଚି । ଆମେ କଥା ଶୁଣି ପାରୁଛୁ କିନ୍ତୁ ଏ ଫୋନରୁ ବାହାରକୁ ଫୋନ୍ କରିପାରୁ ନାହୁଁ ।

ପୋଲିସ ହଉ ଠିକ୍ ଅଛି । ମୁଁ ଏବେ ଯାଉଚି, ଆଜି ରାତି ନଅଟା ବେଳେ ଆସିବି । ନଚେତ କାଲି ସକାଳେ ନିଶ୍ଚୟ ଆସିବି ।

ଉମା ତାଙ୍କଠି କ'ଣ କିଛି କାମ ଥିଲା ?

ପୋଲିସ ହଁ । ମୁଁ ଗୋଟେ ମର୍ଡରକେଶ୍ ଇନ୍‌ଭେଷ୍ଟିଗେସନ୍‌ରେ ଆସିଥିଲି । ତାଙ୍କୁ ନିଶ୍ଚୟ ଦେଖାକରି ଯିବି । ତାଙ୍କୁ କହିବେ ସିଏ କୁଆଡେ ନଯାଇ ଘରେ ଥିବେ ।

ଉମା ସିଏ ମର୍ଡରକେଶ୍‌ରେ ଅଛନ୍ତି ବୋଲି ଆପଣଙ୍କୁ କିଏ କହିଲା ?

ଏ କଲୋନୀ ଲୋକ କେହି ଭଲ ନୁହଁନ୍ତି । କିଏ ମିଛରେ ଯାଙ୍କ ନାଆଁ କହି ଦେଇଚି ।

ପୋଲିସ ନା, ଏ କଲୋନୀ ଲୋକ କେହି କହିନାହାଁନ୍ତି ।

ଉମା ଆଉ କିଏ କହିଲା ?

ପୋଲିସ କେହି କିଛି କହି ନାହାଁନ୍ତି ।

ଉମା ଆଉ ତାହେଲେ ଆପଣ କେମିତି ଯାଙ୍କ ନାଆଁ ଜାଣିଲେ । ଏ କଲୋନୀର ଆଉ କାହା ଘରକୁ ନଯାଇ ଆମ ଘରକୁ କେମିତି ଆସିଲେ ?

ପୋଲିସ ଭାନୁବାବୁଙ୍କ ସାନଭାଇ ଦେବପ୍ରକାଶ ଜେନା ରାଉରକେଲାରେ ଚାକିରି କରନ୍ତି ତ ?

ଉମା ତାଙ୍କୁ ପୁଣି କାହିଁକି ଏଥିରେ ଯୋଡୁଚନ୍ତି ?

ପୋଲିସ ସିଏତ ଏସବୁର ମୂଳ, ତାଙ୍କୁ ନଯୋଡିଲେ କେମିତି ହେବ ?

ଉମା ସିଏ କେମିତି ମୂଳ ହେଲେ ?

(ଏତିକି ବେଳେ କୁନୁ ଆସି ସୁନୁକୁ ଫୋନ୍ କରିଚି ।)

କୁନୁ ହାଲୋ ସୁନୁ ! ହଁ ।

ଉମା (ଶୀଘ୍ରଯାଇ ଫୋନ୍‌ଟା ତା ହାତରୁ ଛଡାଇ ନେଲେ) ଫୋନ୍‌ଟା ପରା ଏକତରଫା ହେଇଯାଇଚି । ତତେ କିଏ କହିଲା ଫୋନ କରିବାକୁ ।

କୁନୁ ନାଇଁ ବୋଉ ! ଫୋନ୍ ଠିକ୍ ଅଛି । ମୁଁ ପରା ସୁନୁ ସହିତ ଏଇନେ କଥା ହେଉଥିଲି ।

ଉମା ଚୁପ୍ । ସବୁ ବେଳେ ଖାଲି ସାଙ୍ଗ, ସାଥୀ, ଖେଳ । ମୁଁ କହୁଚି ଫୋନ୍‌ଟା ଖରାପ ଅଛି । ବଦମାସ୍ ପିଲା । ଯାଉଚୁନା ।

କୁନୁ ନାଇଁ ବୋଉ ।

ଉମା ଯା, କହୁଚି ।

(କୁନୁ ଅନିଚ୍ଛା ସତ୍ତ୍ୱେ ଆର ଘରକୁ ଚାଲିଗଲା ।)

ଉମା ଏ ପିଲାଙ୍କ କଥା କୁହନ୍ତୁନି ଆଜ୍ଞା । ମୁଣ୍ଡ ଖରାପ କରିଦେବେ । ହଁ, କ'ଣ କହୁଥିଲିଟି ? ଏଇ ଆମ ଦେବ କେମିତି ଏଥିରେ ମୂଳ ହେଲେ ?

ପୋଲିସ ଦେବବାବୁତ ଏଠିକା ଠିକଣା ଦେଇଛନ୍ତି । ସିଏ କହିବା

ଅନୁସାରେ ମୁଁ ଏଠିକି ଆସିଛି ।

ଉମା ଆପଣ ଏସବୁ କ'ଣ କହୁଛନ୍ତି, ମୁଁ କିଛି ବୁଝିପାରୁ ନାହିଁ ।

ପୋଲିସ ମୁଁ ତାହେଲେ ବୁଝାଇ ଦେଉଛି ଶୁଣନ୍ତୁ । ଦେବବାବୁ ରାଉରକେଲାରେ ମୋର ପଡୋଶୀ । ତାଙ୍କ ଝିଅ ସୋନାଲୀ ଆଉ ମୋ ଝିଅ ମୋନାଲିସା ଦୁହେଁ ଭାରି ସାଙ୍ଗ । ମୁଁ ଗୋଟେ ମର୍ଡରକେଶ ଇନ୍‌ଭେଷ୍ଟିଗେସନ ପାଇଁ ଭୁବନେଶ୍ୱର ଆସିଛି । ଦେବବାବୁ କହିଥିଲେ ମୋ ଭାଇ ଓ ଭାଉଜଙ୍କୁ ଦେଖା କରିକି ଆସିବେ ।

ଉମା ଓଃ, ମୁଁ ତ ଏକଦମ ଡରି ଯାଇଥିଲି ।

ପୋଲିସ ସତରେ ଭାଉଜ ତୁମର କଲିଜା ଭାରି ପତଳା । (ଦୁହେଁ ହସି ଉଠିଲେ । ଏହି ସମୟରେ ଗୋଟିଏ ଟ୍ରେରେ ତିନିକପ୍ ଚା' ଧରି ପ୍ରବେଶ କଲେ ଭାନୁପ୍ରକାଶ)

ଭାନୁ ଚା ।

ପୋଲିସ ଆପଣ !

ଭାନୁ ମୁଁ ଦେବର ବଡଭାଇ ଆଉ ଆପଣଙ୍କ ଏଇ ଭାଉଜଙ୍କ Husband ଭାନୁପ୍ରକାଶ ଜେନା ।

ପୋଲିସ ଆପଣ ଏଇ ଘରେ ଥିଲେଟି ?

ଭାନୁ ଆପଣଙ୍କର ଏ ଯେଉଁ ପୋଲିସ ପୋଷାକ ଯାକୁ ଦେଖିଲେ କିଏ ଆଗକୁ ଆସିବାକୁ ସାହସ କରିବ ଯେ ମୁଁ ଆସିଥାନ୍ତି ? (ତିନି ଜଣଯାକ ଏକ ସମୟରେ ହସି ଉଠିଲେ ଓ ଚା' ପିଇଲେ ।)

ଉମା ଦେବଙ୍କର ଦେହପା' କେମିତି ଅଛି ? ତାଙ୍କ ପିଲାମାନେ ଭଲ ଅଛନ୍ତିତ ?

ପୋଲିସ ହଁ, ସବୁ ଭଲ । ସମସ୍ତେ ଭଲ ଅଛନ୍ତି ।

ଉମା ଆପଣ ଆଜି ରାତିରେ ଆମ ଘରେ ଖାଇବେ ।

ପୋଲିସ ନା, ଭାଉଜ ! ଆଜି ରାତିରେ ଏସ୍.ପିଙ୍କ ସହିତ ମୋର ଗୋଟେ ଜରୁରୀ appointment ଅଛି ।

ଉମା ତାହେଲେ କାଲି ଖରାବେଳେ ଆମ ଘରେ ଖାଇବେ ।

ପୋଲିସ କାଲି ସକାଳୁ ମୁଁ ରାଉରକେଲା ଫେରିଯିବି ।

ଭାନୁ ତା କେମିତି ହେବ ? ତାହେଲେ ଆଜି ରାତିରେ ନିଶ୍ଚୟ ଆମ ଘରେ ଖାଇବେ ।

ପୋଲିସ ମୁଁ ତ ଘର ଦେଖିଗଲି, ଆଉ ଥରେ ଆସିଲେ ନିଶ୍ଚୟ ଆପଣଙ୍କ ଘରେ ଖାଇବି । (ଘଣ୍ଟା ଦେଖି) ସମୟ ହୋଇଗଲାଣି, ମୁଁ ଏବେ ଆସୁଛି । ନମସ୍କାର ।

ଭାନୁ ନମସ୍କାର ।

ପୋଲିସ ନମସ୍କାର ଭାଉଜ !

ଉମା ନମସ୍କାର ।

ପୋଲିସ ଆଉ ଥରେ ଆସିବା ବେଳେ, ଆଉ ଆପଣ ଭୟ କରିବେ ନାହିଁତ ?

(ସମସ୍ତେ ହସି ଉଠିଲେ । ପୋଲିସ୍ ଅଫିସର୍ ଚାଲିଯିବା ପରେ ଉମା କବାଟର ହୁକ୍‌ଟା ଭିତରୁ ବନ୍ଦ୍ କରିଦେଲେ । ଭାନୁ ଆସି ସୋଫା ଉପରେ ବସିଲେ ।)

ଉମା ତମେ ତମର ବସିଥା, ମୁଁ ଯାଉଚି କାମ କରିବି । ଆଉ କେହି ଆସିଲେ ମୋତେ ଆଉ ଡାକିବ ନାହିଁ । ତମେ ଡାକିଲେ ବି ମୁଁ ଶୁଣିବି ନେଇଁ ।

ଭାନୁ ନା, ଆଉ କେହି ଆସିବାର ନାହିଁ । ତମେ ଯା । ମୁଁ ଆଜିର ଖବର କାଗଜଟା ଏପର୍ଯ୍ୟନ୍ତ ପଢ଼ିନାହିଁ, ଟିକେ ଆଖି ପକେଇ ଦିଏ ।

(ଉମା ଅନ୍ୟ ବଖରାକୁ ଚାଲିଗଲେ । ଭାନୁ ସୋଫା ଉପରେ ବସି ଖବର କାଗଜ ପଢ଼ିଲେ । ପୁଣି କଲିଂବେଲ୍ ବାଜିଲା । ଭାନୁ ଚମକି ପଡିଲେ ।)

ଭାନୁ ପୁଣି କିଏ ଆସିଲା ? ଯିଏ ଆସୁଚି ଆସୁ, ଆଉ କବାଟ ଖୋଲିବି ନେଇଁ । (ବସିକି ଖବର କାଗଜ ପଢ଼ିଲେ । ପୁଣି କଲିଂବେଲ୍ ବାଜିଲା ।)

ଭାନୁ ବଜା ଯେତେ ଜୋର୍‌ରେ ବଜଉଚ ବଜା । ଆହୁରି ଜୋର୍‌ରେ ବଜା । ସେ କଲିଂବେଲ୍ ଛକିଗଲେ ବି ମୁଁ ଶୁଣିବି ନେଇଁ ।

(ପୁଣି ତାଠୁ ଜୋର୍ ଜୋର୍ କଲିଂବେଲ୍ ବାଜିଲା । ଭାନୁ ବିରକ୍ତ ହୋଇ ଖବର କାଗଜ ଫିଙ୍ଗି ଦେଲେ ।)

ଭାନୁ ବଜ୍ଜା, ବଜ୍ଜା । ଟିଙ୍ଗ୍, ଟଙ୍ଗ୍, ଟିଙ୍ଗ୍ଟଙ୍ଗ ।
(ପୁଣି କଲିଂବେଲ୍ ବାଜିଲା । ଭାନୁବାବୁ ବିରକ୍ତ ହୋଇ ଉଠିଲେ ।) ସବୁକଥାରେ ଗୋଟେ ସୀମା ଅଛି । (ପକେଟ୍‌ରୁ ଦରଖାସ୍ତ ବାହାର କରି) ଏ ଦରଖାସ୍ତଟା ରଖିବାରୁ ବାର ଝମେଲା ଲାଗିଛି । ଯିଏ ଆସିବ, ତା ହାତରେ ଧରେଇ ଦେବି । ଝମେଲା ତୁଟିଯିବ ।
(କବାଟ ଖୋଲିବା ସଙ୍ଗେ ସଙ୍ଗେ ଦରଖାସ୍ତଟା ବଢ଼େଇଦେଲେ)
ନିଅ । ନେଇକି ଚାଲିଯା । ଘରେ ରଖିଲେ ରଖିବ, ନହେଲେ ଚିରିକି ଡଷ୍ଟବିନ୍‌କୁ ଫିଙ୍ଗିଦେବ । ନିଅ, ଯା ।
(ଦୁଆର ମୁହଁରେ ଠିଆ ହୋଇଥିବା ଅନୁଜ ଓ ବିନୋଦ ଦୁହେଁ ଭାନୁପ୍ରକାଶଙ୍କର ଏ ଢ଼ଙ୍ଗ ଦେଖି ଆଶ୍ଚର୍ଯ୍ୟ ହେଲେ ।)

ଅନୁଜ କିରେ ଭାନୁ କଥା କ'ଣ ?

ବିନୋଦ ଏଟା କି କାଗଜ ?
(ଭାନୁ ଏ ଦୁହିଁଙ୍କୁ ଦେଖି ଚିହ୍ନିଲେ, ଏମାନେ ଏ କଲୋନୀ ଲୋକ ନୁହଁନ୍ତି । ଏମାନେ ତାର ଅଫିସ ବନ୍ଧୁ । ଫେରିଆସି ତାଙ୍କ ହାତରୁ ଦରଖାସ୍ତଟା ନେଇ ପୁଣି ପକେଟ୍‌ରେ ପୂରାଇଲେ ।)

ଭାନୁ ଆରେ ଅନୁ, ବିନୁ ! ତମେ ଦି'ଜଣ କୁଆଡେ କେମିତି ଚାଲି ଆସିଲ ? ବସ, ବସ ।

ବିନୋଦ କିରେ କଥା କ'ଣ ? ତୁ କାହା ଉପରେ ଏମିତି ରାଗିଛୁ ?

ଭାନୁ ନା, ସିଏ କିଛି ନୁହଁ ।

ଅନୁଜ କିଛି ନୁହଁ କ'ଣ କହୁଚୁ ? ନିଶ୍ଚୟ କିଛି ସିରିଅସ ।

ଭାନୁ (ଶୁଖିଲା ହସ ହସିବାକୁ ଚେଷ୍ଟା କରି) ଆରେ ନା । ସେମିତି କିଛି ନୁହଁ ।

ଅନୁଜ ତୁ ଆଜି ମୁଡରେ ଥିବାପରି ଜଣା ଯାଇନାହୁଁ । କିରେ କ'ଣ ହେଇଚି ?

ଭାନୁ ନାଇଁ, ସିଏ କିଛି ନୁହଁ ।

ବିନୋଦ ତୁ କେମିତି ଦେଖା ଯାଉଚୁ କହିବି ?

ଭାନୁ କେମିତି ?

| | |
|---|---|
| ବିନୋଦ | ଲିକ୍ ହୋଇ ଯାଇଥିବା ଗୋଟେ ବେଲୁନ୍, କିମ୍ବା ବ୍ୟାଟେରୀ ଡାଉନ୍ ହେଇଯାଇଥିବା ଗୋଟେ ଟର୍ଚ୍ଚ, ନହେଲେ ପରୀକ୍ଷାରେ ଫେଲ୍ ହୋଇ ଯାଇଥିବା ଜଣେ ଛାତ୍ର । |
| ଅନୁଜ | ତୋର କ'ଣ ହେଇଚି ? ତୁ ଏମିତି କାଇଁକି ଦିଶୁଚୁ ? |
| ଭାନୁ | ନାଇଁ, କିଛି ନୁହଁ । |
| ଅନୁଜ : | ସେ କିଛି ନୁହଁଟା ପୁଣି କ'ଣ ? |
| ଭାନୁ | ତମେ ସେ ସବୁ କଥା ଜାଣିକି କିଛି ଲାଭ ନାହିଁ । |
| ବିନୋଦ | ଆମେ ଜାଣିଲେ ତୋର କିଛି କ୍ଷତି ହେବାର ଆଶଙ୍କା ନାହିଁ ତ ? |
| ଭାନୁ | ନାଇଁ ଯେ.... |
| ଅନୁଜ | ଆଉ କହୁ ନଉଁ କାଇଁକି ? |
| ଭାନୁ | ସେଟା ଆମ କଲୋନୀ ସମସ୍ୟା । |
| ବିନୋଦ | କ'ଣ ହେଲା ସେଠୁ ? ସେ ସମସ୍ୟା କ'ଣ ଆମ ସମସ୍ୟା ନୁହଁ ? |
| ଅନୁଜ | ଇଂରାଜୀରେ ଗୋଟେ Saying ଅଛି- Joy shared joy doubled, sorrow shared sarrow halfed, ସୁଖ ବାଣ୍ଟିଲେ ଦ୍ୱିଗୁଣିତ ହୁଏ, ଦୁଃଖ ବାଣ୍ଟିଲେ ଅଧା ଲାଘବ ହୋଇଯାଏ । |
| ଭାନୁ | ସେ ସବୁ ପୁରୁଣା କଥା, ଆଜି କାଲି ଅଚଳ । ଆଜିକାଲି ତମେ ଯାହା ଆଗରେ ଦୁଃଖ କହିବ ସିଏ ତୁମ ଦୁଃଖକୁ ଏମିତି ବିଭତ୍ସ କରି ତୁମ ଆଗରେ ବର୍ଣ୍ଣନା କରିବ ଯେ ତୁମେ ଭୟରେ ଚିର୍‌ଚିରେଇ ଉଠିବ । |
| ଅନୁଜ | ହଉ ତୁ ପରୀକ୍ଷା କରି ଦେଖ । |
| ବିନୋଦ | ତୋ ଦୁଃଖଟା କ'ଣ ପ୍ରକାଶ କର । |
| ଭାନୁ | ଏଇ ଆମ ଘରର ପଛପଟେ ଅଚିହ୍ନା ମଣିଷର ଶବ ପଡିଚି । |
| ଅନୁଜ ଓ ବିନୋଦ | (ଦୁହେଁ ଚମକି ପଡିଲେ) ମଣିଷ ଶବ ? କାଇଁ, କୋଉଠି ? |
| ଭାନୁ | ଏଇଠି, ଏଇ ଝରକା ପାଖକୁ ଆସ । |
| | (ଭାନୁ, ଅନୁଜ ଓ ବିନୋଦ ଝରକା ପାଖକୁ ଗଲେ ଓ ଝରକା |

ଖୋଲି ବାହାରକୁ ଚାହିଁଲେ ।)

ଭାନୁ  ସେଇଟା । କ'ଣ ଦେଖିଲତ ?

ବିନୋଦ  ହଁ ।

ଭାନୁ  ତୁ ଦେଖିଲୁ ?

ଅନୁଜ  ହଁ, ହଁ । ଗୋଟେ ଫୁଲ୍ ଲେଙ୍ଗଥ୍‌ର ଶବ ।

ବିନୋଦ  ଏ କଲୋନୀର କେହି ସୁଇସାଇଡ୍ କରିଥିବ ।

ଭାନୁ  ନା ।

ବିନୋଦ  ଏଠିକି ତାହେଲେ ଶବଟା କୋଉଠୁ ଆସିବ ?

ଭାନୁ  ସେଇଟାତ ସମସ୍ୟା । ଆମେ କଲୋନୀବାଲା କେହିକିଛି ଜାଣିନାହୁଁ ।

ଅନୁଜ  ସେ ଶବ ଯାହାର ହେଉ, ଯେମିତି ଆସୁ, ତମର ଏଥିରେ କି ସମସ୍ୟା ସୃଷ୍ଟି ହେଉଛି ?

ଭାନୁ  :  ଶବଟା କାଲିଠୁ ପଚିବ । ଦୁର୍ଗନ୍ଧ ହେବ । ଶବଟା ଏଠୁ ଉଠେଇ ନେବା ପାଇଁ ମୁଁ ମୁନିସିପାଲିଟିକୁ ଗୋଟେ ଦରଖାସ୍ତ ଲେଖିଥିଲି । କିଛି ଲୋକ ମଧ୍ୟ ସେଥିରେ ଦସ୍ତକତ କରିଥିଲେ ।

ବିନୋଦ  ତୁ ତା ହେଲେ ନିଶ୍ଚିନ୍ତ ରହ ଭାନୁ ! କାଲି ସକାଳ ଏଗାରଟା ପୂର୍ବରୁ ଏ ଶବଟା ଏଠୁ ନିଶ୍ଚୟ ଉଠିଯିବ । ମୁନିସିପାଲିଟିର Executive Officer ଅନୁଜର ଶ୍ୱଶୁର ଘର ଗାଆଁ ଲୋକ ।

ଅନୁଜ  ଠିକ୍ ଅଛି, କିନ୍ତୁ ସେଥିରେ କାହାରି ଦସ୍ତକତ ନାହିଁ ।

ବିନୋଦ  :  କୁଆଡେ ଗଲା ?

ଭାନୁ  :  ପୋଲିସ ଥାନା ଆଉ ମର୍ଡରକେଶ୍ ଭୟରେ ସମସ୍ତେ ଆସି ଦରଖାସ୍ତରୁ ଦସ୍ତକତ କାଟିଦେଇ ଚାଲିଗଲେ ।

ଅନୁଜ  ଚଳେଇ ଦେବା । ତୁ ସେଇ ଦରଖାସ୍ତଟା ଦେ ।

ଭାନୁ  ନା । ତାକୁ ବି ଦେଲେ ବିପଦ ।

ବିନୋଦ  କି ବିପଦ ?

ଭାନୁ  ଯଦି କିଛି ଭଲ, ମନ୍ଦ ହୁଏ, ତା ହେଲେ ଏ କଲୋନୀବାଲା ମୋ ପ୍ରାଣ ଖାଇଯିବେ ।

ବିନୋଦ  ତା ହେଲେ, ତୁ ଗୋଟେ କାମ କର । ତୁ ଆଉ ଗୋଟେ ଦରଖାସ୍ତ ନିଜେ ଲେଖିଦେ ।

ଉମା (ହଠାତ୍ ପ୍ରବେଶି) ନା, ଭଏ ଆମର ଆଉ ସେ ଦରଖାସ୍ତ, ଫରଖାସ୍ତ ଲେଖିବେ ନାହିଁ ।

ଅନୁଜ କାଇଁକି କ'ଣ ହେଲା ? ମ୍ୟୁନିସିପାଲିଟିକି ଦରଖାସ୍ତଟେ ଲେଖିଦେଲେ ଅସୁବିଧା କ'ଣ ?

ଉମା : ନାଇଁ, ନାଇଁ, ସେ ଝମେଲାରେ ଆଉ ତାଙ୍କୁ ପୂରାନ୍ତୁ ନେଇଁ । ଯଦି ବନ୍ଧୁଙ୍କୁ ସାହାଯ୍ୟ କରିବା କଥା ତାହେଲେ ନିଜେ ଗୋଟେ ଦରଖାସ୍ତ ଲେଖିକି ଦିଅନ୍ତୁ । ଆପଣତ ଏଠି ପାଖ ଆଖରେ ରହୁ ନାହାଁନ୍ତି, ଆପଣଙ୍କୁ କେହି ସନ୍ଦେହ କରିବେ ନାହିଁ ।

ଅନୁଜ ଏ କଥା ନହେଲା ନାହିଁ । ଆଉ ଗୋଟେ ନିହାତି ସହଜ, ସରଳ, ନିରାପଦ ଉପାୟ ଅଛି ।

ଭାନୁ କି ଉପାୟ ?

ଅନୁଜ ଗୋଟେ ଟ୍ୟାକ୍ସିରେ ନେଇକି ଶବଟାକୁ ଦୂରରେ ପକେଇ ଦେଲେ ସବୁ ଅଡୁଆ ତୁଟିଯିବ । ବାଉଁଶ ଥିବ ନା ବଇଁଶୀ ବାଜିବ ? ଶବଟା ଉଠିଗଲେ ଦୁର୍ଗନ୍ଧର ପ୍ରଶ୍ନ ଉଠିବ ନାହିଁ ।

ବିନୋଦ ନାଇସ୍ ଆଇଡିଆ ।

ଭାନୁ ଯାହା ଟଙ୍କା ଖର୍ଚ୍ଚ ହେବ ମୁଁ ଦେବାକୁ ରାଜି ଅଛି, କିନ୍ତୁ ଟ୍ୟାକ୍ସିଟେ ଭଡାରେ ଆଣି ଶବଟା ତମେ ଦୁହେଁ ଉଠେଇବାର ବ୍ୟବସ୍ଥା କରିଦେଲେ, ମୁଁ ତୁମ ପାଖରେ ଋଣି ରହିବି । ଆଜି ମୋ ମନର ଅବସ୍ଥା ଯାହା, ମୁଁ କିଛି କରିବା ଅବସ୍ଥାରେ ନାହିଁ ।

ବିନୋଦ କରିଦେବାରେ କିଛି ଆପତ୍ତି ନାହିଁ ଯେ ଆଜି ରାତିରେ ଆମ ଦୁହିଁଙ୍କର ଗୋଟେ ଜରୁରୀ appointment ଅଛି । ଆଚ୍ଛା ସେ କଥା ଛାଡ, ଆଉ ଗୋଟେ ଖୁବ୍ ନିରାପଦ ଉପାୟ ଅଛି ।

ଭାନୁ (ଉମା ପ୍ରତି) ତମେ କାହିଁକି ଠିଆ ହେଲ ? ଯା, ଚା' ଟିକେ ଆଣ । (ଉମାଙ୍କର ପ୍ରସ୍ଥାନ)

ବିନୋଦ ତୋର ପ୍ରକୃତ ସମସ୍ୟା କ'ଣ ? ଏ ଶବ ନା ତାର ଦୁର୍ଗନ୍ଧ ?

ଭାନୁ ଆଜିତ ଦୁର୍ଗନ୍ଧ ନାହିଁ, ଶବଟା ପଚିଲେ ସେଥିରୁ ଦୁର୍ଗନ୍ଧ ବାହାରିବ । ସେଇ ଦୁର୍ଗନ୍ଧରେ ଏଇଘରେ ରହିହେବ ନାହିଁ ।

ବିନୋଦ : ତେଣୁ ମୁଁ ଭାବୁଛି ଶବଟା ତୋର କିଛି ସମସ୍ୟା ସୃଷ୍ଟି କରୁନାହିଁ । ସମସ୍ୟା ସୃଷ୍ଟି କରିବ ତାର ଦୁର୍ଗନ୍ଧ ।

ଅନୁଜ — ତୁ ଠିକ୍ ପଏଣ୍ଟକୁ ଧରିଛୁ ବିନୋଦ । ତାର ଯଦି କିଛି ସମାଧାନର ଉପାୟ ଜାଣିଛୁ ପ୍ରକାଶ କର ।

ବିନୋଦ — ଆମେ ଯଦି ଶବ ଉପରେ ଅତର ସ୍ପ୍ରେ କରିଦେବା, ସେଥିରୁ ଦୁର୍ଗନ୍ଧ ନବାହାରି ସୁଗନ୍ଧ ଛୁଟିବ ।

ଅନୁଜ — ଆଇଡିଆ, ଖୁବ୍ ସୁନ୍ଦର ଆଇଡିଆ । ଥାନା, ପୋଲିସ କି କେଶ୍‌ର ଝମେଲା ନାହିଁ । ଶବ ଯୋଉଠି ଅଛି ସେଇଠି ରହିବ । କିନ୍ତୁ ସେଥିରୁ ଦୁର୍ଗନ୍ଧ ନବାହାରି ମଲ୍ଲୀ, ହେନା, ସେବତି, କେତକି ବାସ୍ନାରେ ଏ କଲୋନୀ ମହମହ ହେବ ।

ଭାନୁ — ଅବଶ୍ୟ ଆଇଡିଆଟା ମନ୍ଦ ନୁହେ । କିନ୍ତୁ....

ଅନୁଜ — କିନ୍ତୁ ଟିକେ କଷ୍ଟଲି । ହଁ, ଯେତେକମ୍ ଦରର ଅତର ଆଣିଲେ ବି ଗୋଟେ ଶବ ଉପରେ କଡା ଭାବରେ ପକାଇବା ପାଇଁ ଅତିକମ୍‌ରେ ପାଆଁଶ, ହଜାରେ ଟଙ୍କା ତ ଖର୍ଚ୍ଚ ହେବ ।

ବିନୋଦ — ସମସ୍ୟା ତୁଳନାରେ ସମାଧାନର ଖର୍ଚ୍ଚଟା ସେତେବେଶୀ ଜଣାଯାଉ ନାହିଁ ।

ଭାନୁ — କିନ୍ତୁ....

ଅନୁଜ — କିରେ ପୁଣି କିନ୍ତୁ କ'ଣ ?

ଭାନୁ — ଅତର ସ୍ପ୍ରେ କଲେ, ସେ ଅତର ବାସ୍ନାଟା କେତେ ସମୟ ରହିବ ?

ବିନୋଦ — ଯେତେଥର ଶବ ଦେହରୁ ଅତରବାସ୍ନା କମିଯାଉଥିବ, ସେତେ ଥର ଅତର ସ୍ପ୍ରେ ହେଉଥିବ ।

ଭାନୁ — ଶବ ପାଖରେ ତା ହେଲେ ଗୋଟେ ଲୋକ ଅତର ଧରି ସବୁବେଳେ ଠିଆ ହେଇଥିବ ?

ବିନୋଦ — ଏମିତି ଯଦି ଅସୁବିଧା ଅଛି, ତାହେଲେ ଆଉ ଗୋଟେ କାମ କଲେ ହେବ ।

ଭାନୁ — ଆଉ କି କାମ ?

ବିନୋଦ — ଗୋଟିଏ ବଡ ତୁଳା ଗଦି ଉପରେ ଜୁତୁବୁଡିଆକି ଅତର ସ୍ପ୍ରେ କରି ସେଇ ଗଦିଟାକୁ ଶବ ଉପରେ ଥୋଇ ଦେଲେ ଅତର ବାସ୍ନା ବହୁତ ସମୟ ରହିବ । ଶବରୁ ବାହାରୁ ଥିବା ଦର୍ଗନ୍ଧ ଗଦି ତଳେ ଚାପି ହୋଇ ରହିଯିବ ।

ଭାନୁ   ଶବ ଉପରେ ତୁଳାଗଦି ଆଉ ତା ଉପରେ ଅତର ସ୍ପ୍ରେ । ଏ କଥା ନିଶ୍ଚୟ ପୋଲିସ କାନକୁ ଯିବ ।

ବିନୋଦ :  ଏତେ ସୁନ୍ଦର ଉପାୟଟା ମୁଁ ତତେ କହିଲି, ତା'କୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ତୋର ।

ଭାନୁ :  ମୁଁ ପଇସା ଖର୍ଚ୍ଚ କରିବି, କିନ୍ତୁ ତୁମେ ଟିକେ ଏକାମଟା କରିଦିଅ । ଶବ, ଗଦି ଆଉ ଅତର ଏସବୁ ଆମ କଲୋନୀରେ ରହିବ, ଆଉ ତମେ କାମଟା ସାରିଦେଇ ଓଲ୍ଡ ଯାଉନକୁ ପଳେଇବ । ପୋଲିସ ତମର ଚିହ୍ନ ବର୍ଣ୍ଣ ପାଇବ ନାହିଁ ।

ଅନୁଜ   ନା ବାବା ନା, ସେ ଝମେଲାରେ ଆମକୁ ପୁରାନା । ପୋଲିସର ହାତ ଖୁବ୍ ଲମ୍ବା ।

ବିନୋଦ   ହଉ, ସେ କଥା ଛାଡ । ଆଉ ଗୋଟେ ନିହାତି ନିରାପଦ ଉପାୟ ଅଛି । କାହାରି ଦସ୍ତକତ ଦରକାର ନାହିଁ କି ନିଜେ କେହି ଚିହ୍ନା ପଡିବେ ନାହିଁ । ମୁନିସିପାଲିଟି ଶବଟାକୁ ଏଠୁ ଉଠାଇ ନେବ ।

ଭାନୁ   ଏମିତି ଯଦି ସୁନ୍ଦର ଉପାୟଥିଲା, ଏ ପର୍ଯ୍ୟନ୍ତ ନକହି, ଏଣୁତେଣୁ ବାଜେ କଥାଗୁଡା କାହିଁକି କହୁଥିଲୁ ?

ବିନୋଦ   ମୁନିସିପାଲିଟିକି ଗୋଟେ ଫୋନ୍ ମାରିଦେ । ତୋ ଘରେ ତ ଫୋନ୍ ଅଛି ।

ଭାନୁ   ନା, ବାବା ନା । ସେ ଝମେଲାରେ ମୋତେ ପୁରାନା । ମର୍ଡର କେଶ୍‌ର ଫାଶଟା ସିଧା ମୋ ବେକକୁ ଚାଲି ଆସିବ ।

ଅନୁଜ   ଠିକ୍ ଅଛି, ତୋ ଫୋନ୍‌ରୁ କଲେ ସିନା ଅଡୁଆ । ଗୋଟେ ଟେଲିଫୋନ୍ ବୁଥ୍‌ରୁ ଫୋନ୍ କରିଦେ, ଆଉ କିଛି ଭୟ ନଥିବ ।

ଭାନୁ   ଶବଟା ଘର ପଛପଟରେ ପଡିଛି । ମୋ ସ୍ତ୍ରୀ, ଝିଅ ସମସ୍ତେ ଡରୁଛନ୍ତି । ମୁଁ ଘର ଛାଡିକି ଗଲେ ସେମାନେ ଆହୁରି ଡରିବେ । ଗୋଟେ କାମ କର । ତମେ ଦୁହେଁ ଏଇଲେ ଘରକୁ ଫେରିବା ବେଳେ କୋଉ ବୁଥ୍‌ରୁ ଗୋଟେ ଫୋନ୍ ମାରିଦେବ । ନେ ଅନୁ, ଧର ପାଞ୍ଚଟଙ୍କା । Executive Officer ତୋ ଶ୍ୱଶୁର ଘର ଗାଆଁଲୋକ । ତୁ ଫୋନ୍‌ଟା କରିଦେଲେ ସୁବିଧା ହେବ ।

ଅନୁଜ   ବୋକା କାହାଁକା । କିରେ ମତେ ପରା ସିଏ ଚିହ୍ନିଚି । ମୁଁ କ'ଣ

ଜାଣି ଜାଣି ମର୍ଡର କେଶ୍‌ର ଫାଶ ନିଜ ବେକକୁ ଆଣିବି ?

ଭାନୁ ତା ହେଲେ ବିନୋଦ, ନେ ତୁ ଧର । ତୁ କରିଦେବୁ ।

ବିନୋଦ : ନା, ମୁଁ ଉପାୟ କହିଦେଲି, ତାକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ତୋର ।

ଅନୁଜ ଆଜିକାଲି ପୋଲିସବାଲା ସବୁ ଟେଲିଫୋନ୍ ବୁଥ୍‌ର ଫୋନ୍‌କୁ ଟ୍ୟାପ କରି ଶୁଣୁଛନ୍ତି ।

ବିନୋଦ : ଆଚ୍ଛା ଭାନୁ !

ଭାନୁ : କ'ଣ ?

ବିନୋଦ ମୋର ଆଉ ଗୋଟେ ସଜେସନ ଅଛି ।

ଭାନୁ କ'ଣ କହିଲୁ ? ସଜେସନ ? ସଜେସନ୍, ସଜେସନ୍, ସଜେସନ୍ । ତମେ ଦିଇଟା ମତେ ଖାଲି ସଜେସନ୍ ଉପରେ ସଜେସନ୍ ଶୁଣେଇବାକୁ ଆସିଚନା, କିଛି ସାହାଯ୍ୟ କରିବାକୁ ଆସିଛ ? ଦୟାକରି ତମେ ଗଲ, ମୋର ଆଉ ସଜେସନ୍ ଶୁଣିବା ପାଇଁ ଇଛା ନାହିଁ କି ଧୈର୍ଯ୍ୟ ନାହିଁ ।

ବିନୋଦ ଆରେ ତୁ ଏମିତି କାହିଁକି ରାଗିଯାଉଚୁ ?

ଭାନୁ ରାଗିବି ନାହିଁ ? ତମେ ମତେ କ'ଣ ବୋଲି ଭାବିଛ ? ପିଲା ନା ପାଗଳ ? ଦୟାକରି ମତେ ଟିକେ ଏକୁଟିଆ ରହିବାକୁ ଦିଅ । ତମେ ଗଲ, ଯା ।

ଅନୁଜ ତୁ କ'ଣ ଭାବୁଚୁ, ତୋ ପାଇଁ ଆମେ ମର୍ଡର କେଶ୍‌ର ଫାଶଟାକୁ ନିଜ ଗଳାକୁ ଆଣିବୁ ?

ଭାନୁ ନାଇଁ ତମେ କିଛି କରିବା ଦରକାର ନାହିଁ । ତମେ ଯା ।

ବିନୋଦ : ହଉ ଆମେ ଯାଉଚୁ । ଆରେ ଅନୁ ଆ ଯିବା ।

ଅନୁ : ଚାଲ୍ ।

(ଦୁହେଁ ଚାଲିଗଲେ । ଭାନୁ କବାଟ ବନ୍ଦ କଲେ ।)

ଭାନୁ : ଖାଲି ସଜେସନ ଉପରେ ସଜେସନ । ପାଟିରେ ବାଟୁଳି ବାଜୁ ନାହିଁ ।

(ଗୋଟିଏ ଟ୍ରେରେ ଚାରିକପ୍ ଚା' ଧରି ଉମା ପ୍ରବେଶ କଲେ ।)

ଭାନୁ : ଚା କାହା ପାଇଁ ଆଣିଲ ?

| | |
|---|---|
| ଉମା | ତମେ ପରା କହିଥିଲ ? |
| ଭାନୁ | ନା । ମୁଁ କହି ନେଇଁ । ଆଉ କାହାକୁ ଚାହାଦେବା ଦରକାର ନାହିଁ ।ମୁଁ କହିଲେ ବି ତମେ ଆଉ କାହାକୁ ଚା' ଦେବ ନାହିଁ । ନିହାତି ହୋଯିଲେଣ୍ ଦିଇଟା । |
| ଉମା | ସେମାନେ କ'ଣ ପଳେଇଲେ ? |
| ଭାନୁ | ନା, ମୁଁ ସେମାନଙ୍କୁ ବିଦା କରି ଦେଲି । ଏଠି ରାତି ପର୍ଯ୍ୟନ୍ତ ବସିକି ଗୋଟେ ପାଲା ଲଗେଇଚନ୍ତି । |
| ଉମା | ଚା' କ'ଣ ଫେରାଇ ନେବି ? |
| ଭାନୁ | ନା, ତମେ ବସ । |
| ଉମା | ବସିବି ! |
| ଭାନୁ | ହଁ ବସ । |
| | (ଉମା ଓ ଭାନୁ ସାମନା ସାମାନି ଦୁଇଟି ସୋଫା ଚେୟାରରେ ବସିଲେ ।) |
| ଭାନୁ | ତମେ ଧର ଏ ଦୁଇ କପ୍, ଆଉ ମୁଁ ଧରୁଛି ଦି' କପ୍ । ହଁ, ପିଅ । |
| ଉମା | ଦିଇ କପ୍ ଚା କେମିତି ଏକାବେଳକେ ପିଇବି ? |
| ଭାନୁ | ପିଇବତ କେମିତି ପିଇବ କ'ଣ ? |
| ଉମା | ତମେ ଆଗ ପିଉନ । ପିଅ । |
| ଭାନୁ | ହେଇ ପିଇଲି । ତମେ ପିଅ । |
| | (ଭାନୁ ଦୁଇ କପ୍ ଚା' ଏକାଥରେ ଉଠାଇ ମୁହଁରେ ଲଗାଇ ପିଇଲେ । ଉମା ହସି ଉଠିଲେ । ମଞ୍ଚ ଅନ୍ଧକାର ହେଲା ।) |



ଆନଂଦ ଚଂଦ୍ର ପହି

# ଚତୁର୍ଥ ଦୃଶ୍ୟ

(ସୋମବାର ସକାଳ । କଲିଂବେଲ୍ ବାଜିଲା । କୁନୁ ଆସି କବାଟ ଖୋଲିଲା । ସୁନୁ ପ୍ରବେଶ କଲା ।)

କୁନୁ ଆରେ ସୁନୁ ! ତୁ କୁଆଡେ ?

ସୁନୁ ଖେଳିବା ନି ?

କୁନୁ ତୁ ଆମ ଘରକୁ ଆସିଚୁ ବୋଲି ଜାଣିଲେ ତୋ ବୋଉ ତତେ ଗାଳିଦେବ ।

ସୁନୁ ନାଇଁ ବୋଉ କିଛି କହିବନି । ବୋଉ ପରା କହିଲା ତୁ ଯା କୁନୁ ସାଙ୍ଗେ ଖେଳିବୁ ।

କୁନୁ ହଉ ଆ ଖେଳିବା ।

ସୁନୁ କୁନୁନାନୀ ! ତମ ଘରକୁ ତ କାଇଁ ବେଶି ଗନ୍ଧ ହଉନି ? ଆମ ଘରକୁ ନା ଭାରି ଗନ୍ଧ ହଉଚି ।

କୁନୁ ଆମର ସବୁ କବାଟ ଝରକା ବନ୍ଦ ଅଛି । ତମର ଭଲକି ବନ୍ଦ୍ କରିନା କି ?

ସୁନୁ କେଉଁଛାଣି ।

କୁନୁ ଶବଟା ପଚିଗଲାଣି ନା କ'ଣ ? ନହେଲେ କାଇଁକି ଗନ୍ଧ ହୁଅନ୍ତା ? ଆସିଲୁ ଦେଖିବା, ଆ ।

(କୁନୁ ଓ ସୁନୁ ଦୁହେଁ ଝରକା ପାଖକୁ ଗଲେ । ଝରକା ଖୋଲି ଶବଟାକୁ ଦେଖିଲେ । ଏତିକି ବେଳେ ଅନ୍ୟଘରୁ ଆସିଛନ୍ତି ଭାନୁବାବୁ ।)

କୁନୁ ବାପା ! ବାପା ! ଦେଖିଲଣିନା, ଲୋକର ଗୋଟେ ଗୋଡ କିଏ ନେଇଗଲାଣି ।

ସୁନୁ ହଁ, ମଉସା । ସେ ଲୋକର ଗୋଟେ ଗୋଡ ନାହିଁ ।

ଭାନୁ ଇସ୍, କି ଦୁର୍ଗନ୍ଧ ! ତତେ ଦୁର୍ଗନ୍ଧ ହେଉନାହିଁ ?

କୁନୁ : ହଁ ଗନ୍ଧେଇଲା ।
ସୁନୁ : ମତେ ଭାରି ବାନ୍ତି ମାଡୁଚି । ଅ....
ଭାନୁ : ଯା, ଶୀଘ୍ର ଝରକା ବନ୍ଦ୍ କର୍ ।
କୁନୁ ତମେ ଆସ ଆଗେ ଦେଖିବ, ତାପରେ ମୁଁ ବନ୍ଦ୍ କରିବି ।
ଭାନୁ (ନାକ ଚିପିଧରି) ନାଇଁ ମୁଁ ଦେଖିବା ଦରକାର ନାହିଁ । ତୁ ଆଗ ଝରକା ବନ୍ଦ୍ କର ।
ଉମା : (ପ୍ରବେଶି) ଉହୁଁ, କି ଗନ୍ଧ ! (ନାକରେ ଲୁଗା ଚାପି) ମୁଁ କାଲିଠୁ ଝରକା ବନ୍ଦ୍ କରିଥିଲି କିଏ ଖୋଲିଲା ?
ଭାନୁ ଏଇ କୁନୁ ଖୋଲିଚି । ଦେଲ, ଶୀଘ୍ର ବନ୍ଦ୍ କରିଦିଅ ।
(ଉମା ଝରକା ବନ୍ଦ୍ କଲେ)
ଉମା : କିଲୋ ସୁନୁ ! ତୁ କ'ଣ ଆମ ଘରେ ? ତୋ ବୋଉ ଜାଣିଲେ ପୁଣି ବାଡେଇ ବାଡେଇ ନେଇଯିବ ।
ସୁନୁ ନାଇଁ ମାଉସୀ ! ବୋଉ କହିଲା - ଆମ ଘରକୁ ଶବ ଗନ୍ଧ ବେଶି ହଉଚି, ତୁ ଯା ମାଉସୀ ଘରେ ଖେଳିବୁ ।
ଉମା ଏତେ ବେଳକୁ ମାଉସୀ ଘର ।
ଭାନୁ ଓଃ, ତମେ ଟିକେ ଚୁପ୍ କଲ । ଛୋଟ ଛୁଆଟାକୁ ଏସବୁ କହିବାର ମାନେ କ'ଣ ? କୁନୁ ! ଗଲୁମା ଆରଘରୁ ଧୂପକାଠି ଲଗେଇକି ନେଇ ଆସିବୁ ।
କୁନୁ ଆ ସୁନୁ ଯିବା ।
ସୁନୁ ଚାଲ ।
(କୁନୁ ଓ ସୁନୁ ଆର ବଖରାକୁ ଗଲେ ।)
ଭାନୁ ମୁଁ କହୁଚି ମ୍ୟୁନିସିପାଲ୍‌ଟିରେ ଖବର ଦେଇଦବା, ସିଏ ଶବଟାକୁ ଉଠାଇ ନେଇଯିବେ । ତମେ ନାହିଁ କଲ । ଶବଟା ପଚିକି ଗନ୍ଧେଇଲାଣି । ଏଥର ସମ୍ଭାଳ ।
ଉମା ମୁଁ କ'ଣ ଏକୁଟିଆ ନାହିଁ କଲି ? ତମରି ଆଗରେ ତ ଗୁମାନବାବୁ, ଦିଲ୍ଲୀପବାବୁ ଆଉ ସ୍ମୃତିବାବୁ ସମସ୍ତେ ଦରଖାସ୍ତରୁ ନାଆଁ କାଟିକି ଚାଲିଗଲେ । ମୋ ଦୋଷ କାଇଁକି ଦଉଚ ?
ଭାନୁ ଆଜିକି ମୋଟେ ଦିଇଦିନ ହେଇଚି, ଏତେ ଗନ୍ଧ । ମଣିଷ

ପଚିଲେ ଏମିତି ବିଚିକିଚିଆ ଗନ୍ଧ ହୁଏ ? ଦୁର୍ଗନ୍ଧରେ ପେଟରୁ ଭାତ ବାହାରି ପଡୁଚି ।

ଉମା ଏ କଲୋନୀବାଲା ସମସ୍ତେ ସେମିତି ଚଳିବେ ନା ଘର ଭାଙ୍ଗିକି କୁଆଡେ ପଳେଇବେ ?

(ଏହି ସମୟରେ କୁନୁ ଓ ସୁନୁ ଧୂପକାଠି ଲଗେଇକି ଆଣିଛନ୍ତି ।)

କୁନୁ ନିଅ ବାପା ।

ଉମା ଦେ, ମୋତେ ଦେ ।

(ଉମା, କୁନୁ ଓ ସୁନୁ ଧୂପକାଠି ଲଗାଇ ଘରର ବିଭିନ୍ନ ସ୍ଥାନରେ ଥୋଇଲେ ।)

ଭାନୁ ମୋଟେ ଦ୍ୱିତୀୟ ଦିନରେ ଏତେ ଦୁର୍ଗନ୍ଧ । ତୃତୀୟ ଦିନକୁ ଦୁର୍ଗନ୍ଧ ଆହୁରି ବଢ଼ିବ, ଚତୁର୍ଥ ଦିନକୁ ଆହୁରି, ପଞ୍ଚମ ଦିନକୁ ଆହୁରି, ଷଷ୍ଠ ଦିନକୁ ଆହୁରି ।

ଉମା ଆମେ ବାହାର କବାଟ, ଝରକା ନଖୋଲିଲେ ଗଲା ।

ଭାନୁ ଆଜି କେବଳ ଝରକା ବାଟେ ଦୁର୍ଗନ୍ଧ ଆସୁଛି, କାଲି ସ୍କାଇଲାଇଟ ବାଟେ ଆସିବ, ରୋଷେଇ ଘର ଚିମିନିବାଟେ ଆସିବ, ବାଲ୍‌କୋନୀ ବାଟେ ଆସିବ ।

ଉମା ଆମେ ସବୁ ବାଟ, ଫାଙ୍କ ବନ୍ଦ୍ କରିଦେବା ।

ଭାନୁ ଫାଙ୍କ ଗୁଡା କେମିତି ବନ୍ଦ୍ କରିବା ?

ଉମା ଫାଙ୍କରେ କନା ଗେଞ୍ଜିକି ବନ୍ଦ୍ କରି ଦେବା ।

ଭାନୁ ଆଜିକାଲି ଖରାଦିନ । କବାଟ୍ ଝରକା ଏମିତି ନିବୁଜ କରି ଦେଲେ ଘର ଭିତରୁ ଖାଲି ଗରମ ବାମ୍ଫ ବାହାରିବ ।

କୁନୁ : ଜୋର୍‌ରେ ଫ୍ୟାନ୍ ଲଗାଇ ଦେବା ।

ସୁନୁ : ଘରେ ପାଣି ଛିଞ୍ଚି ଦେବା ।

ଭାନୁ : କୁନୁ !

କୁନୁ କ'ଣ ବାପା ?

ଭାନୁ ତୁ ସୁନୁକୁ ନେଇ କି ଯା, ସେ ଘରେ ଖେଳିବ ।

କୁନୁ ଆ ସୁନୁ ।

(କୁନୁ ଓ ସୁନୁ ପ୍ରସ୍ଥାନ)

ଆନଂଦ ଚଂଦ୍ର ପହି

ଭାନୁ   ତମେ ଆଉ ଗୋଟେ କାମ କର ?
ଉମା   ଆଉ କି କାମ ?
ଭାନୁ :   ଘରେ ଭଲ ଭାବରେ ଅତର ସ୍ପ୍ରେ କରିଦିଅ । ଯା, ରୁମ୍ ସ୍ପ୍ରେଟା ନେଇଆସ ।
ଉମା   ରୁମ ସ୍ପ୍ରେଟା ପରା ଏଇ ଘରେ ଅଛି ।
(ଟେଲିଫୋନ ଆରପଟେ ରୁମ୍ ସ୍ପ୍ରେ ଥିଲା । ସେଠୁ ପାଇଗଲେ ।)
ଉମା :   ନିଅ ।
ଭାନୁ   ମତେ କ'ଣ ଦଉଚ ? ତମେ ସ୍ପ୍ରେ କର ।
(ଉମା ବୁଲି ବୁଲି ଘର ସାରା ସ୍ପ୍ରେ କଲେ । ଏତିକି ବେଳେ ପୁଣି କଲିଂ ବେଲ୍ ବାଜିଲା ।)
ଉମା   ନା, ମୋଟେ କବାଟ ଖୋଲନା, ବାହାରୁ ଦୁର୍ଗନ୍ଧ ଘର ଭିତରକୁ ପଶି ଆସିବ ।
(ପୁଣି କଲିଂବେଲ୍ ବାଜିଲା)
ଭାନୁ   ମୁଁ ଦେଖୁଚି କିଏ ଡାକୁଚି ?
ଉମା   ଏ କଲୋନୀବାଲା ହୋଇଥିଲେ ତାଙ୍କୁ ସେଇ ଦୁଆର ମୁହଁରୁ ବିଦା କରିଦେବ । ନହେଲେ ଆଜି ଦିନଟା ବି ନଷ୍ଟ ହେଇଯିବ ।
(ଭାନୁବାବୁ କବାଟ ଖୋଲିବା ମାତ୍ରେ ନାକରେ ରୁମାଲ ଦେଇ ଠେଲିପେଲି ପଶି ଆସିଲେ ସ୍ମୃତିବାବୁ, କାବେରୀ, ଗୁମାନବାବୁ ଓ ଦିଲ୍ଲୀପ ବାବୁ ।)
ଉମା   ଆପଣମାନେ ପୁଣି କୁଆଡେ ଆସିଲେ ? ଆଜି ବି କ'ଣ ଆମକୁ ବସେଇ, ଶୁଆଇ ଦେବେ ନାହିଁ ?
ଭାନୁ   ଗନ୍ଧ ହେଉଚି ତ ? ଠିକ୍ ଅଛି ? ଦିନକୁ ଦିନ ଦୁର୍ଗନ୍ଧ ପ୍ରବଳରୁ ପ୍ରବଳତର ପ୍ରବଳତମ ହେବ । ଯାଆନ୍ତୁ । କବାଟ ଝରକା ବନ୍ଦକରି, ଝୁଣାଧୂପ ଦେଇ ଘର ଭିତରେ ଆତ୍ମଗୋପନ କରିବା ହିଁ ଏକମାତ୍ର ନିରାପଦ ପନ୍ଥା । ଯାଆନ୍ତୁ ।
ଦିଲ୍ଲୀପ   ଦୁର୍ଗନ୍ଧକୁ ଆମେ ସହିଯିବୁ । ଘର କବାଟ, ଝରକା ବନ୍ଦ୍ କରିବୁ, ଧୂପ ଝୁଣା ଦେବୁ । ଯା ଫଳରେ ହୁଏତ ଦୁର୍ଗନ୍ଧ ଆମ ଘର ଭିତରକୁ ପଶିବ ନାହିଁ । କିନ୍ତୁ ଦୁର୍ଗନ୍ଧଟା ନିଶ୍ଚୟ ପୋଲିସ୍

ନାକରେ ବାଜିବ ।

ଘୁମାନ ଆମ ପରିତ ପୋଲିସ୍ ତା ନାକରେ ରୁମାଲ ଗେଞ୍ଜି ସହିଯିବ ନାହିଁ ?

ଭାନୁ ଆଉ କ'ଣ କରିବ ?

ସ୍ମୃତି ସିଏ ନିଶ୍ଚୟ ଦୁର୍ଗନ୍ଧ ଆସୁଥିବା ଦିଗକୁ କନେଷ୍ଟବଳ ପଠାଇବ ।

ଉମା ପୋଲିସ କ'ଣ କରିବ ନ କରିବ ସେ କଥା ଆମକୁ କହି କିଛି ଲାଭ ନାହିଁ ।

ଘୁମାନ ପୋଲିସ ନିଶ୍ଚୟ ଦୁର୍ଗନ୍ଧକୁ ଅନୁସରଣ କରି ଆମ କଲୋନୀକୁ ଆସିବ ଆଉ ଶବଟାକୁ ଠାବ କରିବ ।

ସ୍ମୃତି ଶବଟାକୁ ଠାବ କଲେ ପୋଲିସ୍ ଏ କଲୋନୀର ସମସ୍ତଙ୍କ ଘରର କବାଟ ଠକ୍ ଠକ୍ କରିବ ।

ଉମା ପୋଲିସ୍ ସମସ୍ତଙ୍କ କବାଟ ଠକ୍ ଠକ୍ କରୁ, ଧଡଧଡ କରୁ କି କବାଟ ଭାଙ୍ଗୁ, ସେ କଥା ଏଠି ଆସି ଫେରାଦ ହେବାର କିଛି ଅର୍ଥ ନାହିଁ ।

ଭାନୁ ଆପଣମାନେ ପ୍ରତ୍ୟେକ ବ୍ୟକ୍ତିଗତ ଭାବେ ତାର ସାମନା କରିବେ । ମୋତେ ସେ କଥା କହି କିଛି ଲାଭ ନାହିଁ ।

ଦିଲ୍ଲୀପ ନାଇଁ, ମୁଁ କ'ଣ କହୁଥିଲି କି ଭାନୁବାବୁ !

ଭାନୁ କ'ଣ କହୁଥିଲେ ?

ଦିଲ୍ଲୀପ ପୋଲିସ ନିଶ୍ଚୟ ଗନ୍ଧବାରିକି ଏ କଲୋନୀର ପ୍ରତ୍ୟେକ ଘରେ ପହଞ୍ଚିବ ଆଉ ପ୍ରତ୍ୟେକଙ୍କୁ ଏ ମର୍ଡର କେଶ୍ ବିଷୟରେ ପଚାରିବ । ସମସ୍ତେ ନିଶ୍ଚୟ ଅଲଗା, ଅଲଗା କଥା କହିବେ ।

ଘୁମାନ ପୋଲିସର ସନ୍ଦେହ ସେଇଠୁ ବଢ଼ିବ ।

ସ୍ମୃତି ପୋଲିସ ସନ୍ଦେହ କଥାତ ସମସ୍ତେ ଜାଣନ୍ତି, ମହାଭୟଙ୍କର ।

କାବେରୀ : ସମସ୍ତଙ୍କୁ ଗୋଟି ଗୋଟିକି ହାତକଡି ଲଗାଇ ଥାନାକୁ ଟାଣିବ ।

ଉମା ତମର ସବୁ କେଇଟା ମୁହଁ ? କାଲି ଭାରି ଆଣ୍ଟରେ ଆସି ଦରଖାସ୍ତ ଚିରି ଖଣ୍ଡ ଖଣ୍ଡ କରି ଚାଲିଗଲ । ଆମେ କୁଆଡେ ବିପଦଜନକ ଲୋକ, ମତଲବୀ ଲୋକ, ପର ମୁଣ୍ଡରେ ନଡିଆ ଫଟେଇ ପାଟି ସୁଆଦ କରିବା ଲୋକ ?

କାବେରୀ : ନାଇଁ ଭଉଣୀ ! ମୁଁ କ'ଣ ଏତେ କଥା ଜାଣିଥିଲି ? ସବୁ

ମୂଳରେ ସେଇଡର । କାଲି ମୁଁ ଯାହା କରିଥିଲି ପୋଲିସ୍ ଡରରେ, ଆଜିବି ଆସିଚି ସେଇ ପୋଲିସ ଡରରେ । କାଲି କଥାକୁ ଏମିତି ଗଣ୍ଠିକରି ଧରି ବସିଲେ ଆଉ ଚଳିବ ? ସମସ୍ତେ ବସିକି କ'ଣ ଗୋଟେ ନ କଲେ ସମସ୍ତେ ଟଣା ହୋଇ ଥାନାକୁ ଯିବା ।

ଦିଲ୍ଲୀପ ମୋର ସେ ଥାନାକୁ ଭାରି ଡର ।

ଉମା ନା ବାବା, ନା । ଆମେ ଗଙ୍ଗାଗଲୁ ଯେତିକି ଫଳ ପାଇଲୁ ସେତିକି, ଆଉ ନୁହେଁ । ଯାହା କରିବାର ଅଛି, ଆମକୁ ଛାଡି ତମେ ସବୁ ମିଶିକି କର ।

ଭାନୁ ଆପଣମାନେ ଆଉ କାହିଁକି ଠିଆ ହେଲେ, ଯାଆନ୍ତୁ । ମତେ କ୍ଷମା କରନ୍ତୁ, ମୁଁ ଆଉ ସେ ଝମେଲାରେ ପଶି ପାରିବି ନାହିଁ ।

ଦିଲ୍ଲୀପ ଭାନବାବୁ ! କିଛି ଗୋଟେ ନକଲେ ଝମେଲା କମିବ ନେଇଁ ବଢ଼ିବ । ମତେ ଭାରି ଡର ମାଡୁଚି । ଗୁମାନବାବୁ ! ଆରେ ଠିଆ ହେଲେ କ'ଣ ? ଭାନୁବାବୁଙ୍କୁ ଟିକେ ବୁଝାନ୍ତୁ ।

ଗୁମାନ ଭାନୁବାବୁ ! ଏତେ ଲୋକ ଆମେ ଆସିଛୁ, ଆମ କଥା ରଖିବେ ନାହିଁ ?

ସ୍ମୃତି ଯାହାତ ହେବାର ହେଲାଣି, ପଛକଥା ଆଉ ନ ଧରି କିଛି ଗୋଟେ କରନ୍ତୁ ।

କାବେରୀ : ହଁ ଢେନାବାବୁ । ଆମ ଭୁଲ୍ ଆମେ ବୁଝିପାରିଚୁ । ସେଥିପାଇଁ ଲଜ୍ଜିତ । କିଛି ଗୋଟେ ବ୍ୟବସ୍ଥା କରନ୍ତୁ ।

ଭାନୁ ନା, ମୁଁ ଆଉ କାହାରି କଥା ଶୁଣି ମୋ ମୁଣ୍ଡକୁ ଅଧିକ ଖରାପ କରିବାକୁ ଚାହୁନାହିଁ । ଏ ବିପଦରୁ ଖସିବାର ବାଟ ନିଜେ ନିଜେ ଚିନ୍ତା କରନ୍ତୁ । ଦୟାକରି ଆପଣମାନେ ଗଲେ, ଯାଆନ୍ତୁ ।

ଉମା ଆପଣମାନେ ଚାଲିଲେ, ଚାଲନ୍ତୁ ।

ଗୁମାନ ଆମେ ଏଥର ସମସ୍ତେ ଆପଣଙ୍କ କଥା ମାନିବୁ । ଆମ ଅନୁରୋଧ ଟିକେ ରକ୍ଷା କରନ୍ତୁ ।

ଭାନୁ କହିଲିତ ଆଉ ମୁଁ ସେ ଝମେଲାରେ ପଶିବି ନାହିଁ । ମୁଁ ଆପଣମାନଙ୍କୁ ହାତ ଯୋଡୁଛି, ଆପଣମାନେ ଏଠୁ ଯାଆନ୍ତୁ, ମତେ ଟିକେ ଶାନ୍ତିରେ ରହିବାକୁ ଦିଅନ୍ତୁ । ଯାଆନ୍ତୁ ।

ଗୁମାନ,
ଦିଲ୍ଲୀପ ଓ
କାବେରୀ : ଆମେ ସବୁ ଏତେଲୋକ ଆସି କହୁଛୁ । ଆପଣ ଏମିତି କ'ଣ ହେଇଗଲେ କି ? କିଛି ଗୋଟେ ବ୍ୟବସ୍ଥା ନହେଲା ପର୍ଯ୍ୟନ୍ତ ଆମେ ଏଠୁ ଯିବୁ ନେଇଁ । କ'ଣ କରିବେ କରନ୍ତୁ ।
(ସମସ୍ତେ ମିଶି କୋଳାହଳ କଲେ)

ଭାନୁ ଯିବ ନେଇଁତ ? ଠିକ୍ ଅଛି ମୁଁ ପୋଲିସ୍‌କୁ ଫୋନ୍ କରୁଚି ।
(ଫୋନ୍ ପାଖକୁ ଆସି ଫୋନ୍ ଡାଏଲ କରିବା ଦେଖି ସମସ୍ତେ ଭୟରେ ଧାଇଁକି ପଳାଇ ଗଲେ । ଭାନୁବାବୁ ଫୋନ୍ ଧରିବା ଅବସ୍ଥାରେ ମଞ୍ଚ ଅନ୍ଧକାର ହୋଇଛି ।)



# ଶେଷ ଦୃଶ୍ୟ

(ଉମା ଓ ଭାନୁବାବୁ ଗାଆଁକୁ ଯିବା ପାଇଁ ବ୍ରିଫ୍‌କେଶ୍ ଓ ବ୍ୟାଗ ସଜାଡୁଥିଲେ । ସମୟ ତୃତୀୟ ଦିନ ସକାଳ ।)

ଭାନୁ (ଗୋଟିଏ ବ୍ରିଫ୍‌କେଶ୍‌ରେ ତାଙ୍କ ପୋଷାକ ପତ୍ର ସଜାଡୁ ସଜାଡୁ) ଉମା ! ଉମା !

ଉମା (ଆର ଘରୁ) ଯାଉଚି, ଯାଉଚି ।

ଭାନୁ ମୋ ଟାଉଏଲ୍‌ଟା ଆଣତ ।

ଉମା (ଆଉ ଗୋଟେ ବ୍ରିଫ୍‌କେଶ୍ ଧରି ଆସିଛି) ଏଇଟା ତମ ଟାଉଏଲ ନିଅ । ଆଚ୍ଛା ତମ ବ୍ରସ୍, ଜିଭଛେଲା ନେଇଛ ତ?

ଭାନୁ ହଁ, ସବୁ ନେଇଛି । ତମେ ଯାହା ନେବା କଥା ଶୀଘ୍ର ସଜାଡ ।

ଉମା (ସଜାଡୁ ସଜାଡୁ) ସେମାନେ ସମସ୍ତେ ଏଇ କଲୋନୀରେ ରହୁଚନ୍ତି, ଆମେ କାହିଁକି ଗାଆଁକୁ ଯିବା ?

ଭାନୁ କିଏ କ'ଣ କଲା ନ କଲା ଆମର ସେଥିରେ କିଛି ଯାଏ ଆସେ ନାହିଁ ।

କୁନୁ (ପ୍ରବେଶି) ଗାଆଁରେ ଆମେ କେତେଦିନ ରହିବା ବୋଉ ?

ଉମା ସେ କଥା ମୁଁ କେମିତି କହିବି ? ବାପାଙ୍କୁ ପଚାର ।

କୁନୁନ ବାପା !

ଭାନୁ କ'ଣ ?

କୁନୁ ଆମେ କେତେଦିନ ଗାଁରେ ରହିବା ?

ଭାନୁ ଯେତେଦିନ ଏଠି ଦୁର୍ଗନ୍ଧ ହେଉଥିବ, ସେତେଦିନ ।

କୁନୁ ଏଇ ପାଞ୍ଚ, ଛଅ ଦିନ ଭିତରେ ଆମେ ଫେରି ଆସିବାନା ?

ଭାନୁ କାଇଁକି ? ଚାରି, ପାଞ୍ଚ ଦିନ ଭିତରେ ତୋର କ'ଣ କିଛି ପରୀକ୍ଷା ଥିଲା ?

କୁନୁ ନାଇଁ ଯେ....

ଆନଂଦ ଚଂଦ୍ର ପହି

ଉମା  ଆଉ କ'ଣ ଥିଲା କହୁନଉଁ ?

କୁନୁ  ଏଇ ସୁନୁର Birthday ଥିଲା । ତା Birthdayକୁ ନ ରହିଲେ.....

ଭାନୁ  ସେ Birthday ଫାରଥ ତେ କଥା ଛାଡ । ତୋର ଯାହା ନେବା କଥା ବନ୍ଧା ବନ୍ଧିକର ।

ଉମା  ତୋ ବହିପତ୍ର ଧରିଥା ।

ଭାନୁ  ଠିଆ ହେଲୁ କ'ଣ ? ଯା, ତୁ ଯାହା ନେବା କଥା ସଜାଡିକି ଆଣ । ବେଶି କିଛି ଆଣିବୁ ନାହିଁ । ଦୁଇ, ତିନି ହଳ ଜାମା, ପ୍ୟାଣ୍ଟ ଆଉ କିଛି ବହିଖାତା । ଯା, ଶୀଘ୍ର ଯା ।
(କୁନୁର ଆର ବଖରାକୁ ପ୍ରସ୍ଥାନ)

ଉମା  ମୁଁ କ'ଣ କହୁଥିଲି କି ?

ଭାନୁ  ଯାହା କହିବା କଥା ଶୀଘ୍ର କୁହ ।

ଉମା  ଘର ଛାଡି ପଳେଇବାଟା ଠିକ୍ ହେବ ନାହିଁ ।

ଭାନୁ  ଡରୁଆମାନଙ୍କ ପାଇଁ ଦୁଇଟି ବାଟ ନିରାପଦ । ପ୍ରଥମବାଟ ହେଲା- କବାଟ, ଝରକା ବନ୍ଦ୍ କରି ଘର ଭିତରେ ଲୁଚିବା । ଆମେ ସେ ଅନୁସାରେ ଦୁଇଦିନ ଘର ଭିତରେ ଲୁଚିଲେ । ଗନ୍ଧରେ ଆଉ ରହି ହେଉନାହିଁ । ଆମେ ଏଥର ଦ୍ୱିତୀୟବାଟ ଧରିବା । ଏ ସ୍ଥାନଛାଡି କିଛି ଦିନ ପାଇଁ ଗାଆଁକୁ ପଳେଇବା ।

ଉମା  ଆମ ଘର ପଛପଟେ ମଲା ମଣିଷଟେ ପଡିଚି ଆମେ ଯଦି ଘରେ ତାଲା ପକାଇ ଗାଆଁକୁ ଚାଲିଯିବା ତାହେଲେ ପୋଲିସ୍ ଆମକୁ ସନ୍ଦେହ କରିବ । ଆମେ ଗାଆଁକୁ ଗଲେବି ପୋଲିସ୍ ଗୋଡେଇ ଗୋଡେଇ ଆମକୁ ଗାଆଁରୁ ଧରିବ ।
(ଏହି ସମୟରେ କଲିଂବେଲ୍ ବାଜିଲା)

ଉମା  ହେଇ ପୋଲିସ୍ ଆସିଲା ।

ଭାନୁ  ପୋଲିସ୍ କାହିଁକି ଆସିବ ?

ଉମା  ଏ କଲୋନୀ ଲୋକ ଭାରି ମାରାତ୍ମକ । ସେମାନଙ୍କୁ ଆମେ କାଲି ଏଠୁ ଅପମାନ ଦେଇ ତଡି ଦେଲେ । ସେଇମାନେ ନିଜ ମୁଣ୍ଡରୁ ଦୋଷ ଖସାଇବା ପାଇଁ ହୁଏତ ଆମ ନାଆଁ ପୋଲିସ୍‌ରେ କହିଦେଇଛନ୍ତି । ନହେଲେ ଏତେ ସକାଳୁ ଆଉ

କିଏ ଆସିଲା ?

ଭାନୁ : ତାହେଲେତ ଖୁବ୍ ବିପଦ । କ'ଣ ଏଇନେ କରିବା ?

ଉମା : ତମେ ସେ ଘରେ ଲୁଚି ଯା ।

ଭାନୁ : ଯଦି ପୋଲିସ ଆସି ଏ ସବୁ ବନ୍ଧାବନ୍ଧି ହୋଇଥିବାର ଦେଖିବ, ତାହେଲେ ତାର ସନ୍ଦେହ ଦୃଢ଼ ହେଇଯିବ । ଆଗ ଏସବୁ ସେ ଘରକୁ ଉଠାଇ ନେବା ।

(ସେମାନେ ଜିନିଷପତ୍ର ଆର ଘରକୁ ନେବାବେଳେ ଆଗରୁ ଆସିଛି କୁନୁ । ସିଏ କାନ୍ଧରେ ପକାଇଛି ଗୋଟେ ବ୍ୟାଗ ।)

କୁନୁ କ'ଣ ବାପା ! ଗାଆଁକୁ ଯିବା ବନ୍ଦ୍ ହେଇଗଲାକି ? ଭାରି ବଢ଼ିଆ ହେଲା ।

ଭାନୁ ଚୁପ୍‌କର ।

କୁନୁ : କାଇଁକି ? କ'ଣ ହେଲା ?

ଉମା ପୋଲିସ୍, ପୋଲିସ୍ । ତୁ ସେ ଘରକୁ ଯା ।

(ଉମା କୁନୁକୁ ଠେଲି ଠେଲି ନେଲେ । ପୁଣିଥରେ କଲିଂବେଲ୍ ବାଜିଲା । ଭାନୁବାବୁ ବ୍ରିଫ୍‌କେଶ୍ ଦୁଇଟା ଆର ଘରେ ଥୋଇ ସାରି କବାଟ ଖୋଲିବାକୁ ଗଲେ । କିନ୍ତୁ ଉମା ତାଙ୍କୁ ଠେଲି ଠେଲି ଆଣିଲେ ।)

ଉମା ତମେ ସେ ଘରକୁ ଯା । ମୁଁ କବାଟ ଖୋଲୁଚି ।

ଭାନୁ ଦେଖ ଉମା ! କଥାବାର୍ତ୍ତା ଆଦୌ ଏପଟ ସେପଟ କରିବ ନାହିଁ । ଯାହା କହିବ ଗୋଟିଏ କଥା ।

(ଉମା କବାଟ ଖୋଲିବାକୁ ଗଲେ ଓ ଭାନୁ ଆର ଘରକୁ ଗଲେ । କିନ୍ତୁ ଭାନୁ ପୁଣି ଫେରି ଆସିଲେ ।)

ଭାନୁ : ଉମା !

ଉମା : କ'ଣ ?

ଭାନୁ ଶୁଣ ।

(ଉମା ଫେରିଆସିଲେ । ତାଙ୍କୁ ଭାନୁ ଫୁସ୍ ଫୁସ୍ କଣ୍ଠରେ କହିଲେ ।)

କହିବ ସେ ଲୋକକୁ ଚିହ୍ନି ନାହିଁ, କେମିତି ମଲା ଜାଣି ନାହିଁ, କିଏ ମାରିଲା କହି ପାରିବି ନାହିଁ ।

ଆନନ୍ଦ ଚନ୍ଦ୍ର ପତି

ଉମା  ହଉ । (ପୁଣି କବାଟ ଖୋଲିବାକୁ ଗଲେ)

ଭାନୁ  (ପୁଣି ପଛରୁ ଡାକିଲେ) ଉମା ! ଶୁଣ । ପୋଲିସ ଯେତେ ଯାଉ, ସ୍ୟାଉ ବୁଲେଇ, ବଙ୍କେଇ ପଚାରିଲେ ବି ଆଦୌ ଡରିବ ନାହିଁ । ଡରିଲେ ସବୁ ଭୁଲ ଭାଲ୍ ହୋଇଯିବ ।

ଉମା  ଠିକ୍ ଅଛି । ତମେ ସେ ଘରକୁ ଯା ।

(ଭାନୁ ସେ ଘରକୁ ଗଲେ । ଉମା ଯାଇ କବାଟ ଖୋଲିଲେ । ଘର ଭିତରକୁ ପଶି ଆସିଲା ଉମାଙ୍କ ସାନ ଭାଇ ମୁନା ।)

ମୁନା  ଅପା ନମସ୍କାର !

ଉମା  କିରେ ମୁନା ! ଏତେ ସକାଳୁ କୁଆଡେ ?

ମୁନା  ତୁ ଏମିତି ଡରିଲା, ଡରିଲା କାଇଁକି ଦିଶୁଚୁ ?

ଉମା  କାଇଁ, ନାଇଁତ ? ନା, ମୁଁ କାଇଁକି ଡରିବି ?

ମୁନା  ଭାଇ କୁଆଡେ ଗଲେ ?

ଉମା  ଆରେ 'ଶୁଣୁଚ ! ଏଇ ଆମ ମୁନା ଆସିଚି ।

(ଭାନୁ ଆର ଘରୁ ଆସିଲେ । ତାଙ୍କ ପଛେ ପଛେ କୁନୁ ଆସିଲା)

ଭାନୁ  ଆରେ ମୁନା ତୁ ? ଆମେ ଭାବିଲୁ....

ମୁନା  ନମସ୍କାର ଭାଇ !

ଭାନୁ  ନମସ୍କାର ।

କୁନୁ  ମାମୁ ନମସ୍କାର । ମାମୁ ତମେତ ଆସିଲ, ପୋଲିସ୍ କୁଆଡେ ଗଲା ?

ଉମା  ତୁ ସେ ଛୁଆଟା କଥାରୁ କ'ଣ ପାଇବୁ ?

କୁନୁ  ବାପା ପରା କହୁଥିଲେ ପୋଲିସ ଆସିବ । ମୁଁ କ'ଣ ମିଛ କହୁଚି ?

ଭାନୁ  ମୁଁ ତାକୁ ମିଛରେ ଡରାଇ ଦେଇଥିଲି । ତା କଥା କାଇଁକି ଶୁଣୁଚୁ ? ଆଚ୍ଛା ମୁନା ! ତୁ ଏତେ ସକାଳୁ କେମିତି ଚାଲି ଆସିଲୁ ? କ'ଣ କାହା ଦେହପା କିଛି.....

ମୁନା :  ନା ।

ଉମା  ଆଉ ତା ହେଲେ ?

ମୁନା :  ତୁ ତ ଜାଣିଚୁ ବାପା ଅପସ୍ମାର ବାତ ପାଇଁ ସବୁଦିନ ଗୋଟେ ବଟିକା ଖାଆନ୍ତି ।

ଉମା ହଁ, କ'ଣ ହେଲା ?

କୁନୁ ଅପସ୍ମାର ବାତ କ'ଣ ମାମୁ ?

ମୁନା କିଛି ନ ଥିବ, ହଠାତ୍ ତାଙ୍କ ଦେହ ଥରିବ, ସିଏ ପଡ଼ିକି ଛାଟିପିଟି ହେବେ । ତାଙ୍କ ଚେତା ବୁଡ଼ିଯିବ ।

ଭାନୁ ତାଙ୍କ ଔଷଧ କ'ଣ ସରିଯାଇଚି ? ଠିକ୍ ଅଛି, ଥାଉ ଟିକେ ପରେ ଔଷଧ ଦୋକାନ ଖୋଲିଯିବ ।

ମୁନା : ନାଇଁ ତାଙ୍କ ଔଷଧ ସରି ନେଇଁ ଅଛି ।

ଉମା ଥାଉ ତାହେଲେ କ'ଣ ହେଲା ?

ମୁନା : ମୁଁ କାଲି ରାତିରେ ଦେଖିଲି ଟିଭି ଉପରେ ବାପାଙ୍କର ସେଇ ଔଷଧ ଡବାଟା ଥୁଆ ହେଇଚି । (ପକେଟ୍‌ରୁ ସେଇ ଔଷଧ ଡବାଟା ବାହାର କଲା ।) ଆଜି ଭୋରୁ ଏଇ ଔଷଧ ଡବାଟାକୁ ଧରିକି ଦଉଡ଼ିଛି ।

ଉମା ବାପା କୁଆଡ଼େ ଯାଇଛନ୍ତି କି ?

ମୁନା ବାପା ତୋ ଘରକୁ ଆସିଚନ୍ତି ପରା ।

ଉମା ନା, ଏଠିକିତ ଆସି ନାହାଁନ୍ତି ।

ମୁନା ଆସି ନାହାଁନ୍ତି ? ଗଲା ରବିବାର ଭୋର ଛଅଟା ବସ୍‌ରେ ମୁଁ ତାଙ୍କୁ ବସେଇ ଦେଲି । ଅତିବେଶିରେ ସକାଳ ସାତଟା କି ସାଢ଼େ ସାତଟା ଭିତରେ ତୁମ ଘରେ ପହଞ୍ଚିବା କଥା ।

ଭାନୁ ଏଇ ରବିବାର ସକାଳେ ?

ମୁନା ହଁ ।

ଭାନୁ ଆଚ୍ଛା ଉମା ! ସିଏ..... (ଝରକା ଆଡ଼କୁ ଚାହିଁଲେ)

ଉମା ତମେ କାହା କଥା କହୁଛ ? ବାପାଙ୍କ ପରି ତମେ ଆଉ କାହାକୁ ହାଟ ବଜାରରେ ଦେଖିଲ କି ?

ଭାନୁ ନାଇଁ ଯେ..... ଆଚ୍ଛା ମୁନା !

ମୁନା କ'ଣ ଭାଇ ?

ଭାନୁ ବାପା ଘରୁ ଆସିବା ବେଳେ କ'ଣ ପିନ୍ଧିଥିଲେ ? ଧୋତି ପଞ୍ଜାବୀ ନା ଧୋତି ହାପ୍ ସାର୍ଟ ?

ମୁନା ଧୋତି ହାପ୍ ସାର୍ଟ ।

ଭାନୁ : ଆଚ୍ଛା ସାର୍ଟର ରଙ୍ଗ କ'ଣ ଥିଲା ?

ମୁନା ଧଳା ।
(ଭାନୁ ଏଥର ଝରକା ଫିଟାଇ ବାହାରକୁ ଚାହିଁଲେ । ଦୁର୍ଗନ୍ଧ ଘରେ ଭିତରକୁ ପଶି ଆସିଲା, ସମସ୍ତେ ନାକରେ ଲୁଗା ଦେଲେ ।)

ମୁନା କ'ଣ ଗୋଟେ ଦୁର୍ଗନ୍ଧ ହେଉଛି ?

ଭାନୁ ଗୋଡରେ କ'ଣ ପିନ୍ଧିଥିଲେ ଯୋତା ନା ଚପଲ ?

ମୁନା ହାପ୍ ସୁଚ୍ଛ ।

ଭାନୁ ହାପ୍ ସୁଚ୍ଛର ରଙ୍ଗ କ'ଣ ଥିଲା ?

ମୁନା କଳା । ଝରକା ବନ୍ଦ୍‌କର ଭାଇ, ଭାରି ଦୁର୍ଗନ୍ଧ ଆସୁଚି ।
(ଭାନୁ ପୁଣି ଝରକା ପାଖକୁ ଗଲେ ଓ ଫେରିଲେ)

ଉମା କ'ଣ ଦେଖିଲ ?
(ଭାନୁ କିଛି ନ କହି କବାଟ ଫିଟାଇ ବ୍ୟସ୍ତ, ବିବ୍ରତ ହୋଇ ବାହାରକୁ ଚାଲିଗଲେ । ତାଙ୍କ ପଛେ ପଛେ ଗଲେ ଉମା ଓ କୁନୁ ।)

ମୁନା କ'ଣ ହେଲା ? ଭାଇ କ'ଣ ହେଲା ? କ'ଣ ଦେଖିଲ ?
(ମୁନା ଝରକା ପାଖକୁ ଗଲା ଓ ଝରକା ବାଟେ ବାହାରକୁ ଚାହିଁଲା । ବ୍ୟସ୍ତ ବିବ୍ରତ ହୋଇ ବାହାରକୁ ଗଲା । ବାହାରୁ ଶୁଭିଲା ଉମାର କାନ୍ଦଣା ସ୍ୱର । କିଛି ସମୟ ପରେ କାନ୍ଦୁଥିବା ଉମାକୁ ଧରି ଧରି ଆଣିଲେ ମୁନା ଓ କୁନୁ । ତାଙ୍କ ପଛେ ପଛେ ଆସୁଛନ୍ତି ଭାନୁ । ସମସ୍ତେ ଦୁଃଖରେ ଭାଙ୍ଗି ପଡିଛନ୍ତି ।)

ଭାନୁ (ଉମା ପ୍ରତି) କାନ୍ଦୁଛ କାହିଁକି ? ଆଉ କାନ୍ଦିବାରେ ଲାଭ କ'ଣ ? ସେଦିନ ମତେ ସେଠିକି ଛାଡିଲ ନାହିଁ । ଠିକ୍ ସମୟରେ ସେଠି ଆମେ ପହଞ୍ଚି ତାଙ୍କ ମୁହଁରେ ଟୋପେ ପାଣି ଦେଇଥିଲେ କି ତାଙ୍କୁ ଡାକ୍ତର ଦେଖାଇଥିଲେ, ତୁମ ବାପା ହୁଏତ ବଞ୍ଚିଯାଇଥାନ୍ତେ । କିନ୍ତୁ ତମେ ସେତକ କରାଇ ଦେଲ ନାହିଁ । ଡର ତୁମକୁ ଖାଇଗଲା । ହେଲେ ଏବେ ସେଇ ଡର ତୁମଠୁ ତୁମ ବାପାଙ୍କୁ ଛଡାଇ ନେଲା ।
(ଏହି ସମୟରେ ଗୁମାନବାବୁ, ଦିଲ୍ଲୀପବାବୁ, ସ୍ମୃତିବାବୁ ଓ କାବେରୀ ଆସିଛନ୍ତି । ସମସ୍ତେ ମୁହଁ ତଳକୁ କରି ଠିଆ

ଆନନ୍ଦ ଚନ୍ଦ୍ର ପହି

ହୋଇଛନ୍ତି ।

ଭାନୁ (ପଡୋଶୀମାନଙ୍କ ପ୍ରତି) ଆଉ ଆପଣମାନେ କାହିଁକି ଆସିଲେ ? ଯାଆନ୍ତୁ । ସେ ଆପଣଙ୍କର କେହି ନୁହଁନ୍ତି । ସିଏ ମୋ ସ୍ତ୍ରୀଙ୍କ ବାପା ଆଉ ମୋର ଶ୍ୱଶୁର । ଆପଣମାନଙ୍କର ଡରିବା ଦରକାର ନାହିଁ । ପୋଲିସ ଆସିଲେ ମୋ ଘରକୁ ଆସିବ । ପଚାରିଲେ ମତେ ପଚାରିବ । କେଶ୍‌ବାସ୍ ହେଲେ ମୋ ନାଆଁରେ ହେବ । ଯାଆନ୍ତୁ, ଆମ କଥା ଆମେ ବୁଝିବୁ । ହେଲେ ଯିବା ପୂର୍ବରୁ ଗୋଟେ କଥା ଶୁଣିଯାଆନ୍ତୁ । ଆଜି ମୋର ଏମିତି ଦୁର୍ଘଟଣା ହେଇଚି, କାଲି ଆପଣମାନଙ୍କର ଯେ ଏମିତି କିଛି ନ ହେବ, ତା କିଏ କହିପାରିବ ? ଏତେ ଡରିଲେ ଆମେ ଏ ସମାଜରେ ଚଳିବା କେମିତି ? ସବୁବେଳେ ସବୁକଥାକୁ ଅତ୍ୟଧିକ ମାତ୍ରାରେ ଡରିଲେ କେତେବେଳେ ଯେ କି ସମସ୍ୟା ସୃଷ୍ଟି ହେବ, ତା ଆପଣ କହିପାରିବେ ?

ଆପଣ ରାସ୍ତାରେ ଗଲାବେଳେ କୌଣସି ଦୁର୍ଘଟଣା ଦେଖି ପୋଲିସ ଡରରେ ମୁହଁ ଆଡେଇ ଚାଲିଯାନ୍ତି, ସେଇ ଦୁର୍ଘଟଣା ଗ୍ରସ୍ତ ଲୋକଟି ଯେ ଆପଣଙ୍କର କେହି ଆତ୍ମୀୟ ନହୋଇଥିବେ ସେ କଥା ଆପଣ କହିପାରିବେ ? ଦିଅନ୍ତୁ, ମୋ କଥାର ଜବାବ ଦିଅନ୍ତୁ ।

ମୁଁ ଜାଣେ ଆପଣମାନେ କିଛି ଜବାବ ଦେବେ ନାହିଁ । କାହିଁକି ନା ଆପଣମାନେ ସମସ୍ତେ ଡରୁଆ । ଆପଣମାନଙ୍କର ଦେହ, ମୁଣ୍ଡ, ବୁଦ୍ଧି, ଅକଲ ସବୁକୁ ଡର ହିଁ କାବୁ କରି ନେଇଛି ।

(ଭାନୁବାବୁ ପୋଲିସ୍‌କୁ ଖବର ଦେବାପାଇଁ ଫୋନ୍ ଧରିବା ମୁଦ୍ରାରେ ଫ୍ରିଜ ହୋଇଗଲେ । ଗୁମାନବାବୁ, ଦିଲ୍ଲୀପବାବୁ, ସ୍ମୃତିବାବୁ ଓ କାବେରୀ ଫେରିଯିବା ମୁଦ୍ରାରେ ଫ୍ରିଜ ହୋଇଗଲେ । ମଞ୍ଚ ଅନ୍ଧକାର ହେଲା ।)



ଆନଂଦ ଚଂଦ୍ର ପହି

# ଅନ୍ୟ ଅରଣ୍ୟ

## ନାଟକ ସମ୍ପର୍କରେ ସୂଚନା

| | |
|---|---|
| ସେଟ ସଂଖ୍ୟା | ଏକ |
| ନାରୀ ଚରିତ୍ର ସଂଖ୍ୟା | ଏକ |
| ଅଭିନୟ ସମୟ : | ଏକ ଘଣ୍ଟା |

## ଚରିତ୍ର ସୂଚୀ

| | |
|---|---|
| ରାଜେନ୍ଦ୍ର | ଶିଳ୍ପପତି । ବୟସ ୫୫ ବର୍ଷ । |
| ସୁଶାନ୍ତ | ଡାକ୍ତର । ରାଜେନ୍ଦ୍ରର ବଡପୁଅ । ବୟସ ୩୦ ବର୍ଷ । |
| ପ୍ରଶାନ୍ତ | ରାଜେନ୍ଦ୍ରଙ୍କ ସାନ ପୁଅ । ବୟସ ୨୮ ବର୍ଷ । |
| ମକରା | ରାଜେନ୍ଦ୍ରଙ୍କ ଚାକର । ବୟସ ୩୫ ବର୍ଷ । |
| ପୃଥୀରାଜ | ଶିଳ୍ପପତି । ରାଜେନ୍ଦ୍ରଙ୍କ ବନ୍ଧୁ । ବୟସ ୫୦ ବର୍ଷ । |
| ଅନୁପମା : | ରାଜେନ୍ଦ୍ରଙ୍କ ସ୍ତ୍ରୀ । ବୟସ ୫୦ ବର୍ଷ ଭିତରେ । |

ଏହି ନାଟକଟି ପ୍ରଥମେ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରରୁ ତା ୮.୮.୯୯ରିଖ ସଂଧ୍ୟାରେ ପ୍ରସାରିତ ହୋଇଥିଲା । ନାଟକଟିର ଲୋକ ପ୍ରିୟତା ଦୃଷ୍ଟିରୁ ଏହା ବହୁବାର ପ୍ରସାରିତ ହେଉଛି । ଏହି ନାଟକର ବିଭିନ୍ନ ଭୂମିକାରେ-

- ❑ କିଶୋର ଖଣ୍ଡୁଆଳ
- ❑ ଦୁର୍ଗା ପ୍ରସାଦ ମହାପାତ୍ର
- ❑ ବିଦ୍ୟୁତ୍‌ଲତା ଦେବୀ
- ❑
- ❑

# ପ୍ରଥମ ଦୃଶ୍ୟ

(ଶିକ୍ଷପତି ରାଜେନ୍ଦ୍ରଙ୍କ ଶୋଇବା ଘର । ରାଜେନ୍ଦ୍ର ଗୋଟିଏ ହୁଇଲ୍ ଚେୟାରରେ ବସିଛନ୍ତି । ପାଖରେ ଖଟ ଆଉ ଗୋଟିଏ ଛୋଟ ଟେବୁଲ୍ । ଟେବୁଲ ଉପରେ କିଛି ଔଷଧ ଶିଶି, ପାଣି, ଗ୍ଲାସ ରଖାଯାଇଛି । ଗୋଟିଏ ଟି.ଭି. ସେଟ୍ ଓ ଗୋଟିଏ ଆଲ୍‌ମିରା ମଧ୍ୟ ସେ ବଖରାରେ ଅଛି ।)

ରାଜେନ୍ଦ୍ର — ମକରା ! ମକରା !

ମକରା — (ପ୍ରବେଶି) କ'ଣ ବାବୁ ?

ରାଜେନ୍ଦ୍ର — ଅନୁପମାଙ୍କୁ ଡାକିଲୁ ?

ମକରା — ମାଆ କହିଲେ......

ରାଜେନ୍ଦ୍ର — କ'ଣ କହିଲେ ?

ମକରା — କହିଲେ ସିଏ କ'ଣ କାମ କରୁଛନ୍ତି, ଆଉ ଟିକେ ପରେ ଆସିବେ ।

ରାଜେନ୍ଦ୍ର — ଘରେ କ'ଣ ଚାକର, ପୂଜାରୀ କମ୍ ଅଛନ୍ତି ଯେ ସିଏ କାମ କରୁଚନ୍ତି ? ଯା, ଆଉଥରେ ଡାକ ।

ମକରା — କାମ କ'ଣ କହୁନା ବାବୁ, ମୁଁ କରିଦେବି । ଆଉ ଥରେ ଡାକିଲେ ସିଏ ମୋ ଉପରେ ରାଗିବେ ।

ରାଜେନ୍ଦ୍ର — ତୁ ତାଙ୍କୁ ନଡାକିଲେ ମୁଁ ତୋ ଉପରେ ରାଗିବି, ଏକଥା କ'ଣ ମନେ ନାହିଁ ?

ମକରା — ଅଛି ବାବୁ ।

ରାଜେନ୍ଦ୍ର — ଯା. ଶୀଘ୍ର ଯା ।

ଅନୁପମା — (ପ୍ରବେଶି) କିଏ କୁଆଡେ ଯିବ ?

ମକରା — (ଡରିଯାଇ) ନାଇଁ, ଏଇ ବାବୁ କହୁଥିଲେ.....

ଅନୁପମା — ବାବୁ କ'ଣ କହୁଥିଲେ ?

ରାଜେନ୍ଦ୍ର (ମକରା ପ୍ରତି) ତୁ ଏଥର ଯା ।

ମକରା ଯାଉଚି । (ପ୍ରସ୍ଥାନ)

ଅନୁପମା ମତେ ତମେ କ'ଣ ପାଇଁ ଡାକିଲ ?

ରାଜେନ୍ଦ୍ର ନାଇଁ, କିଛି କାମ ନାହିଁ ।

ଅନୁପମା ଆଉ ତେବେ ଡକେଇଲ କାହିଁକି ?

ରାଜେନ୍ଦ୍ର କାମ କରିବାକୁ ତ ମକରା ଅଛି । ବସ କଥାବାର୍ତ୍ତା ହେବା ।

ଅନୁପମା (ଷ୍ଟୁଲଟିଏ ଟାଣି ଆଣି ଅନିଚ୍ଛା ସତ୍ତ୍ୱେ ବସିଲେ) କ'ଣ କହିବ କୁହ ।

ରାଜେନ୍ଦ୍ର ମତେ କ୍ୟାନସର ହେବା ଆଜିକି କେତେବର୍ଷ ହେଲା ?

ଅନୁପମା ଅଢ଼େଇ, ତିନିବର୍ଷ ।

ରାଜେନ୍ଦ୍ର ସାଙ୍ଗ, ସାଥୀ, ବନ୍ଧୁବାନ୍ଧବ ସମସ୍ତେ ଥରେ ଥରେ ଦେଖି ଦେଇ ଗଲେ, ସେମାନଙ୍କ କର୍ତ୍ତବ୍ୟ ତୁଟିଗଲା । ଆଉ କେହି ଆସୁ ନାହାଁନ୍ତି ।

ଅନୁପମା କହିବ ଯଦି ସମସ୍ତଙ୍କୁ ଚିଠି ଦେଇ ପୁଣିଥରେ ଡକାଇ ଆଣିବି ।

ରାଜେନ୍ଦ୍ର ନା । ସେମାନଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କୁ ଡକାଇବାଟା ଭଲ ହେବ ନାହିଁ । ତାଛଡା ଯିଏ ବି ଆସୁଛି, ପାଞ୍ଚ, ସାତ ମିନିଟର କଥାବାର୍ତ୍ତା ପରେ ଉଠୁ ଉଠୁ ହେଉଚି ।

ଅନୁପମା ସେମାନଙ୍କର ବିଭିନ୍ନ ଆଡେ କାମ ।

ରାଜେନ୍ଦ୍ର ସେମାନଙ୍କ କଥା ଛାଡ, ତୁମ ପୁଅ ବୋହୂଙ୍କ କଥା ଦେଖ । ସାନ ବୋହୂତ ସପ୍ତାହରେ ଥରେ ଦୁଆର ମୁହଁରୁ ଅନେଇଁ ଦେଇ ଚାଲିଯାଉଛି । ବଡ ବୋହୂ ଦିଲ୍ଲୀରେ । ପ୍ରଶାନ୍ତ ଏଇଠି ଥାଇବି ମୁଁ ତାକୁ ଦୁଇ, ତିନି ଦିନରେ ଥରେ ଦେଖୁଛି ।

ଅନୁପମା : ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ । ସେମାନେ ନ ଆସନ୍ତୁ, ସେମାନଙ୍କଠି ତୁମର କାମ କ'ଣ ? ତୁମ ଖାଇବା, ପିଇବା, ଘଷା, ଆଉଁସା, ଔଷଧ ଦେବା, ଧରାଧରି ସବୁକାମ କରିବାକୁ ମକରା ଅଛି । ଯଦି କହିବ ଆଉ ଗୋଟେ ଚାକର ରଖିବା ।

ରାଜେନ୍ଦ୍ର ସବୁକାମ କ'ଣ ଚାକର କରି ପାରିବ ?

ଅନୁପମା : କାହିଁକି କରି ପାରିବ ନାହିଁ ?

ରାଜେନ୍ଦ୍ର କାମ ସିନା କରିବ.....

ଅନୁପମା : ଆଉ ପୁଣି କ'ଣ ?

ରାଜେନ୍ଦ୍ର : ମୁଁ ଏକୁଟିଆ ବସି, ବସି, ଶୋଇ, ଶୋଇ ବୋର ହେଉଚି । ମୋ ସମୟ କଟିବ କେମିତି ?

ଅନୁପମା : ଖବର କାଗଜ ପଢ଼, ଟିଭି ଦେଖ । ବାକି ସମୟ ନିଦ ବଟିକା ଖାଇ ଶୋଇପଡ ।

ରାଜେନ୍ଦ୍ର : କେତେ ଶୋଇବି ? ଆଚ୍ଛା ତମେ ଆଜି କାଲି କି କାମ କରୁଛ ? ତମେ ବି ଏଣିକି ମୋ ପାଖକୁ ଆସିବା କମେଇ ଦେଲଣି । ଦିନକୁ ଥରେ ଆସୁଛ, ସେଥିରେ ପୁଣି ଦଶ, ପନ୍ଦର ମିନିଟ୍‌ରୁ ଅଧିକ ସମୟ ରହୁନା ।

ଅନୁପମା କେମିତି ରହିବି ? ତୁମ ଦେହ ଖରାପ ହେବା ପରଠୁ ସବୁ କଥା ମୋତେ ବୁଝିବାକୁ ପଡୁଛି ?

ରାଜେନ୍ଦ୍ର ମୁଁ ଜାଣେ ତମେ ଘର କାମର ବାହାନା ଦେଖାଇବ । ସେମାନଙ୍କ ଘର, ସେମାନେ ବୁଝିବେ । ଆମର ସେଥିରେ କ'ଣ ଅଛି ?

ଅନୁପମା କ'ଣ କହିଲ, ମୁଁ ବାହାନା ଦେଖାଇ ରହୁଛି ?

ରାଜେନ୍ଦ୍ର ସତ କଥା କହିଲେ ତୁମେ ଏମିତି ରାଗୁଛ କାହିଁକି ? ସତ କହିଲ, ମୋ ପାଖରେ ବସିବାକୁ ତୁମର୍ ଆଗ୍ରହ ଅଛି ?

ଅନୁପମା ଏସବୁ ବାଜେ କଥା ତୁମେ ବନ୍ଦ୍ କର । ସମସ୍ତଙ୍କୁ ମୁହେଁ, ମୁହେଁ ଆଘାତ ଦେବା ତୁମର ଗୋଟେ ଆଦତ ହୋଇ ଗଲାଣି । (ଷ୍ଟୁଲ୍ ଛାଡି ଠିଆ ହେଲେ)

ରାଜେନ୍ଦ୍ର : ସମସ୍ତଙ୍କ କଥା କହି ତୁମେ ତମ ନିଜ କର୍ତ୍ତବ୍ୟକୁ ଏଡାଇ ଯାଉଛ । ଅସଲ କଥା ହେଉଛି- ରୋଗୀ ପାଖରେ ବସିବାକୁ ତୁମକୁ ବିରକ୍ତ ଲାଗୁଚି ।

ଅନୁପମା : ତମେ ଏମିତି କ'ଣ କହୁଛ ?

ରାଜେନ୍ଦ୍ର ତୁମେ ଭୁଲି ଯାଉଛ ଅନୁପମା । ମୁଁ କେବଳ ଜଣେ ରୋଗୀ ନୁହଁ, ମୁଁ ତୁମର ସ୍ୱାମୀ । ତୁମେ ମୋର ସ୍ତ୍ରୀ । କେବଳ ସୁଖର ନୁହଁ, ଦୁଃଖର ମଧ୍ୟ ସାଥୀ ।

ଅନୁପମା : ଘର, ଦ୍ୱାର, ପୁଅ, ବୋହୂ, ନାତି, ନାତୁଣୀ ସେମାନଙ୍କର ମୁଁ କ'ଣ କିଛି ନୁହଁ ? ସେମାନଙ୍କ ପ୍ରତି ମୋର କ'ଣ କିଛି କର୍ତ୍ତବ୍ୟ ନାହିଁ ?

ରାଜେନ୍ଦ୍ର ଠିକ୍ ଅଛି, ତୁମେ ଯାଅ ।
(ଅନୁପମା ନୀରବରେ ଠିଆ ହୋଇ ରହିଲେ)

ରାଜେନ୍ଦ୍ର ଠିଆ ହେଲ କାହିଁକି ? ଯାଅ । ଯାଅ କହୁଛି ।

ଅନୁପମା କାହିଁକି ଡକାଇ ଥିଲ କହିଲ ନାହିଁତ ?

ରାଜେନ୍ଦ୍ର ମୋ କଥା ଶୁଣିବା ପାଇଁ କାହାରି ବେଳ ନାହିଁ । ମୋର ବି ଆଉ କାହାକୁ କିଛି କହିବାର ଆଗ୍ରହ ନାହିଁ, ଇଛା ନାହିଁ ।

ଅନୁପମା ତୁମ ଗୋଡଟା ଆଜି ଡ୍ରେସିଂ ହେଇଚି ?

ରାଜେନ୍ଦ୍ର ହଠାତ୍ ମୋ ଗୋଡ କଥା ତୁମର କାହିଁକି ମନେ ପଡିଲା ? କ'ଣ କିଛି Bad Smell ତୁମ ନାକରେ ବାଜିଲା କି ?

ଅନୁପମା ନା ।

ରାଜେନ୍ଦ୍ର ସକାଳେ ଡ୍ରେସିଂ ହୋଇଥିଲା । ଏବେ ତିନିଟା ବାଜିଲାଣି, Smell ହେଉଥିବ । ତୁମେ ଠିଆ ହେଲ କାହିଁକି ? ଯା ।

ଅନୁପମା ମକରା ! ମକରା !

ମକରା (ପ୍ରବେଶି) ମାଆ ! ମତେ ଡାକିଲେ ?

ଅନୁପମା ଡକ୍ଟର ଧଳଙ୍କୁ ଡାକି ଆଣିବୁ । କହିବୁ ମୁଁ ଡାକୁଚି, ଶୀଘ୍ର ଆସିବେ ।

ମକରା ଯାଉଚି ମାଆ ! (ପ୍ରସ୍ଥାନ)

ରାଜେନ୍ଦ୍ର ଡାକ୍ତରଙ୍କୁ କାହିଁକି ଡକାଇଲ ?

ଅନୁପମା ଆଜିଠୁ ସକାଳେ ଥରେ ଆଉ ତିନିଟା ବେଳେ ଥରେ, ଏମିତି ଦୁଇଥର ତୁମ ଗୋଡଟା ଡ୍ରେସିଂ କରିବାକୁ କହିବି ।

ରାଜେନ୍ଦ୍ର ଦିନକୁ ଦି ଥର ଡ୍ରେସିଂ ହେବ ? ନା, ବଡ କଷ୍ଟ । ଥାଉ, ସେଇ ଥରକ ଡ୍ରେସିଂ ଚଳିବ ।

ଅନୁପମା : ସଂଧ୍ୟା ବେଳକୁ ଏତେ ବେଶୀ Smell ହେଉଛି ଯେ ଅନ୍ୟ ଘରେ ପିଲାମାନେ ଖିଆ, ପିଆ କରିପାରୁ ନାହାଁନ୍ତି ।

ରାଜେନ୍ଦ୍ର ତୁମେ ତ ଏକଥା ମୋତେ ଆଗରୁ କେବେ କହିନା ।

ଅନୁପମା : ନିହାତି ଦରକାର ନ ହେଲେ, କି ବାଧ୍ୟ ନହେଲେ ତୁମ ମୁହଁରେ ଏମିତି ଅପ୍ରିୟ କଥା କହିବାକୁ ମୋର ସାହସ ହୁଏନା ।

ରାଜେନ୍ଦ୍ର ହଉ, ତାହେଲେ ତୁମେ ଯା ।

ଅନୁପମା କ'ଣ ପାଇଁ ଡକାଇଥିଲ କହିଲ ନାହିଁତ ?

ରାଜେନ୍ଦ୍ର   କ'ଣ ପାଇଁ ଡକାଇ ଥିଲି ମୁଁ ଭୁଲି ଗଲିଣି । ଆଉ କେତେବେଳେ କହିବି । ତୁମେ ଏବେ ଯାଅ ।
(ଅନୁପମା କୁଣ୍ଠିତ ପଦରେ ଚାଲିଗଲେ । ରାଜେନ୍ଦ୍ର ତାଙ୍କ ଯିବା ପଥକୁ କିଛି ସମୟ ଚାହିଁ, ହୁଇଲଚେୟାରରୁ ବହୁ କଷ୍ଟରେ ଉଠି ଖଟ ଉପରେ ଶୋଇଲେ ।)



ଆନଂଦ ଚଂଦ୍ର ପଢ଼ି

# ଦ୍ୱିତୀୟ ଦୃଶ୍ୟ

(ରାଜେନ୍ଦ୍ର ନିଦ ବଟିକା ଖାଇ ନିଦ ଯାଇଛନ୍ତି । ପ୍ରବେଶ କଲେ ସ୍ତ୍ରୀ ଅନୁପମା, ବଡ ପୁଅ ସୁଶାନ୍ତ ଓ ସାନୁପୁଅ ପ୍ରଶାନ୍ତ ।)

ପ୍ରଶାନ୍ତ　ବାପା ! ବାପା ! ଦେଖ କିଏ ଆସିଛନ୍ତି ।

ସୁଶାନ୍ତ　ବାପା ବୋଧେ ନିଦରେ ଶୋଇଚନ୍ତି ।

ଅନୁପମା　ନିଦ ବଟିକା ଖାଇ ଶୋଇଥିବେ ।

ପ୍ରଶାନ୍ତ　ବାପା ! ବାପା !

ଅନୁପମା　ଥାଉ, ଶୋଇଥାନ୍ତୁ । ଆଜିକାଲି ସିଏ ସମସ୍ତଙ୍କ ଉପରେ ବିରକ୍ତ ହେଉଛନ୍ତି ।

ସୁଶାନ୍ତ :　ଏତେ ଦିନ ରୋଗରେ ପଡିଲେଣି ବିରକ୍ତ ହେବେ ନାହିଁ ?

ପ୍ରଶାନ୍ତ　ବାପା ଏବେ ଅଯଥାରେ ସମସ୍ତଙ୍କୁ ଗାଳି ଦେଉଛନ୍ତି । ସେଥିପାଇଁ ମୁଁ ତୁମକୁ ଦିଲ୍ଲୀରୁ ଡକାଇବାକୁ ବାଧ୍ୟ ହେଲି ।

ସୁଶାନ୍ତ　ତୁ ମୋଟେ ବ୍ୟସ୍ତ ହୋନା ।

ପ୍ରଶାନ୍ତ　ନା, ମୁଁ ଆଉ ପାରୁନେଇଁ ଭାଇ ! ତୁମେ କିଛି ଦିନ ଭୁବନେଶ୍ୱରରେ ରହି କିଛି ଗୋଟେ ବ୍ୟବସ୍ଥା କର ନହେଲେ ତମ ସାଙ୍ଗରେ ଦିଲ୍ଲୀକୁ ନେଇ ଯା ।

ସୁଶାନ୍ତ　ହାଭ୍ ପେସେନ୍ସ ପ୍ରଶାନ୍ତ । ସବୁକଥାରେ ଏମିତି ଅଧୈର୍ଯ୍ୟ ହେଲେ ଚଳିବ ?

ପ୍ରଶାନ୍ତ　ବାପାଙ୍କ ଗୋଡରୁ ଏବେ ଉତ୍କଟ ପଚା ଗନ୍ଧ ବାହାରୁଛି । ଏଠି ଭଲରେ ଦିଟା ଖାଉ ହେଉ ନାହିଁକି ଶୋଇ ହେଉ ନାହିଁ । ବୋଉକୁ ପଚାରୁନା ।

ଅନୁପମା :　ମୁଁ କ'ଣ କହିବି ? ଗୋଡଟା ତ ସେପ୍‌ଟିକ୍ ହେଇଚି ସେ କଥା ସିଏ କ'ଣ ଜାଣି ନେଇଁ ?

ସୁଶାନ୍ତ　ଏ ରୋଗ ପାଇଁ ଆମ ଦେଶର ସବୁଠୁ ବଡ ଡାକ୍ତରଖାନା

ବମ୍ବେର ଟାଟା ମେମୋରିଆଲ୍ ହସ୍‌ପିଟାଲ୍‌କୁ ମୁଁ ବାପାଙ୍କୁ ନେଇଛି । ସେଠି ବାପାଙ୍କ ଗୋଡକୁ ଦୁଇ, ଦୁଇଥର ଅପରେସନ୍ କରାଯାଇଛି । ସେମାନେତ କହିଲେ ଆଉ କିଛି କରିହେବ ନାହିଁ ।

ପ୍ରଶାନ୍ତ ମୁଁ କହୁଥିଲି.....

ସୁଶାନ୍ତ ତୁ ଆଉ କ'ଣ କହୁଛୁ ? ଯନ୍ତ୍ରଣା କମାଇବା ପାଇଁ ପେନ୍‌କିଲର୍ ଇଞ୍ଜେକସନ୍ ଓ ଟାବ୍‌ଲେଟ୍ ଦିଆଯାଉଛି । ଘାଆଟାକୁ ଡାକ୍ତର ଧଳଙ୍କ ଉପସ୍ଥିତିରେ ଏବେ ଦିନକୁ ଦୁଇଥର ସଫା କରାଯାଇ ଡ୍ରେସିଂ କରାଯାଉଛି ।

ପ୍ରଶାନ୍ତ ମୁଁ କହୁଥିଲି.....

ସୁଶାନ୍ତ ଯାହା କହିବା କଥା ସିଧା ସଳଖ କହ ।

ପ୍ରଶାନ୍ତ ମୁଁ ଅଫିସ୍ ଚାଲିଗଲାପରେ ବାପା ରାଜଶ୍ରୀ ଆଉ ବୋଉକୁ ଭାରି ହଇରାଣ କରୁଛନ୍ତି । ତୁମେ ଦିଲ୍ଲୀର Institute of Medical Science ର ପ୍ରଫେସର୍ । ତୁମେ ଚାହିଁଲେ ବାପାଙ୍କୁ ସେ ହସ୍‌ପିଟାଲ୍‌ରେ ଆଡ୍‌ମିଶନ୍ କରାଇ....

ସୁଶାନ୍ତ ଚିକିତ୍ସା କରି ବାପାଙ୍କୁ ରୋଗମୁକ୍ତ କରିବାର ଆଉ ସମ୍ଭାବନା ନାହିଁ । କେବଳ ତାଙ୍କର ଯନ୍ତ୍ରଣା କମାଇ ତାଙ୍କୁ ଟିକେ ଭଲରେ ରଖିବା କଥା । ତାଙ୍କୁ ଏ ଅବସ୍ଥାରେ ଦିଲ୍ଲୀକୁ ନେଲେ Problem ଅନେକ ।

ପ୍ରଶାନ୍ତ ପ୍ରୋବ୍ଲେମ୍ କ'ଣ ?

ସୁଶାନ୍ତ ତୁ ଜାଣୁ ତୋ ଭାଉଜ ଚାକିରି କରନ୍ତି । ବାପାଙ୍କୁ ସେଠି କିଏ ଦେଖାଶୁଣା କରିବ ? ଏଠି ବରଂ ବୋଉ ଅଛି, ଆଉ ବାପାଙ୍କ ପୁରୁଣା ଚାକର ମକରା ଅଛି ।

ଅନୁପମା ତୁ ବାପାଙ୍କୁ ଦିଲ୍ଲୀ ନେଲେ ତୋର ଅସୁବିଧା ହେବ, ମୁଁ ଜାଣିଚି । ତୋ ବାପାବି ଚାହାଁନ୍ତି ନାହିଁ ଦିଲ୍ଲୀ ଯିବାକୁ । ଏଠି ତୁ ନିଜେ ଟିକେ ତୋ ବାପାଙ୍କୁ ଦେଖ । ତୁ ଜଣେ ନାମଜାଦା ଡାକ୍ତର । ଆଉ ଯଦି କିଛି କରି ହୁଅନ୍ତା......

ସୁଶାନ୍ତ ମୁଁ ବାପାଙ୍କୁ ଦେଖେ, ଯଦି କିଛି କରିବାର ଥାଏ, ନିଶ୍ଚୟ କରିବି ।

ପ୍ରଶାନ୍ତ ଭାଇ !

ସୁଶାନ୍ତ କହ ।

ପ୍ରଶାନ୍ତ ବାପା ଯଦି ଗ୍ୟାରେଜ ପାଖ ଘରଟାରେ ରହିବାକୁ ରାଜି ହୁଅନ୍ତେ, ତାହେଲେ ଘାଆ ଗନ୍ଧରୁ କିଛିଟା ରକ୍ଷା ମିଳନ୍ତା ।

ସୁଶାନ୍ତ ଏମିତି ଗୋଟେ ନିହାତି ଅପ୍ରିୟ କଥା ବାପାଙ୍କୁ କିଏ କହିବ ?

ପ୍ରଶାନ୍ତ ବୋଉ, ତୁ ବାପାଙ୍କୁ ପଚାରୁ ନଉଁ ?

ଅନୁପମା ତୁ କହୁଛୁ ଯେ, ହେଲେ ଏଭଳି ପରିସ୍ଥିତିରେ ମୁଁ କ'ଣ କରିପାରିବି ? ମୁଁ ତାଙ୍କ ମୁହଁକୁ ଅନଉଁଚି, ତୁମ ମୁହଁକୁ ଅନଉଁଚି । ତାଙ୍କୁ କେମିତି ଏତେ ବଡ କଥାଟେ କହିବି ?

ସୁଶାନ୍ତ ତୁ ବ୍ୟସ୍ତ ହୋନା ପ୍ରଶାନ୍ତ । କିଛି ଗୋଟେ ବ୍ୟବସ୍ଥା କରିବା । କ୍ୟାନ୍‌ସର ରୋଗୀର ଯେତିକି ମନବଳ ଦରକାର ତାର ପରିବାର ଲୋକଙ୍କର ସେତିକି ମନୋବଳ ଦରକାର । କେବଳ ଟଙ୍କା ପଇସା ବନ୍ଧ ପକାଇ ଏ ରୋଗ ଦାଉରୁ ରୋଗୀକୁ କିମ୍ବା ତାର ଉପକୂଳବାସୀ ପରିବାର ପରିଜନଙ୍କୁ, କାହାକୁ ରକ୍ଷା କରି ହେବ ନାହିଁ ।

ଅନୁପମା ତୁ ସାଙ୍ଗେ ସାଙ୍ଗେ ଦିଲ୍ଲୀରୁ ଆସିଛୁ, କିଛି ଖଇ ନାହୁଁ । ଚାଲ୍, ଖିଆ ପିଆ କର, ବାପା ନିଦରୁ ଉଠନ୍ତୁ, ଯାହା କରିବା କଥା କରିବୁ ।

ସୁଶାନ୍ତ ମକରା ଏଠି ବାପାଙ୍କ ପାଖରେ ନାହିଁ, କୁଆଡେ ବୁଲୁଚି ସିଏ ?

ଅନୁପମା ସିଏତ ସବୁବେଳେ ଥାଏ । ତୋ ବାପା ନିଦ ବଟିକା ଖାଇ ଶୋଉଛନ୍ତି ବୋଲି, ଏଇଠି କୋଉଠିକି ଯାଇଥିବ । ଏଇ ସାଙ୍ଗେ ସାଙ୍ଗେ ଆସିଯିବ ।

ସୁଶାନ୍ତ ବାପା କେତେବେଳେ ନିଦରୁ ଉଠିବେ ?

ଅନୁପମା : ନିଦ ବଟିକା କେତେବେଳୁ ଖାଇଲେଣି ମୁଁ ଜାଣିନେଇଁ । ତେବେ ଆଉ ଘଣ୍ଟେ, ଦେଢ଼ ଘଣ୍ଟା ପରେ ନିଶ୍ଚୟ ଉଠିବେ । ତୁ ଆ, ଖାଇବୁ ଆ ।

(ତିନି ଜଣ ଯାକ ଚାଲିଗଲେ)



ଆନନ୍ଦ ଚନ୍ଦ୍ର ପହି

## ତୃତୀୟ ଦୃଶ୍ୟ

(ସମୟ ଅପରାହ୍ନ । ରାଜେନ୍ଦ୍ର ତାଙ୍କ ଶୋଇବା ଘରେ ହୁଇଲ୍ ଚେୟାରରେ ବସିଛନ୍ତି ।)

ରାଜେନ୍ଦ୍ର : ମକରା ! ମକରା ! କୁଆଡେ ଗଲୁକିରେ ? କେହିତ ମୋ ପାଖରେ ରହୁ ନାହାଁନ୍ତି, ତୁବା କାହିଁକି ରହିବୁ ?

ମକରା (ପ୍ରବେଶି) କ'ଣ ମତେ ଡାକୁଥିଲେ ବାବୁ ?

ରାଜେନ୍ଦ୍ର ହଁ ତତେ । ତୁ କୁଆଡେ ଏମିତି ଚାଲିଯାଇଥିଲୁ ?

ମକରା ନାଇଁ, ମୁଁ ଏଇଠି ଥିଲିତ ।

ରାଜେନ୍ଦ୍ର ତୁ ଏଇଠି ଥିଲୁ, ଅଥଚ ମୋ ଡାକ ତତେ ଶୁଭୁ ନାହିଁ ?

ମକରା କ'ଣ କାମ ଥିଲା କହୁନା ବାବୁ ।

ରାଜେନ୍ଦ୍ର ଝରକା ସ୍କ୍ରିନଟା ଟିକେ ଖୋଲି ଦେ ।

ମକରା ଥଣ୍ଡା ପବନ ପଶି ଆସିବ ବୋଲି ମୁଁ ବନ୍ଦ କରି ଦେଇଥିଲି ।

ରାଜେନ୍ଦ୍ର ଶୀଘ୍ର ଖୋଲ ।

ମକରା ଖୋଲୁଚି ।

(ମକରା ଝରକାର ସ୍କ୍ରିନ୍ ଖୋଲି ଦେଲା)

ରାଜେନ୍ଦ୍ର ବେଡ୍ ପେନ୍, ବେଡ, ଥର୍ମୋଫ୍ଲାସ୍କ, ଚେୟାର, ଟେବୁଲ, ଟିଫିନ୍ କ୍ୟାରିଅର, ଗ୍ଲାସ, ଜଗ, କପ୍‌ପ୍ଲେଟ - ଏଇ କେଇଟା ଜିନିଷର ମୁହଁ କେତେ ଦେଖିବି ? ମୋତେ ବିରକ୍ତ ଲାଗିଲାଣି । ଝରକା ବାଟେ ବାହାର ଦୁନିଆକୁ ମୁଁ ଟିକେ ଦେଖେ ।

(ହୁଇଲ ଚେୟାର ଚଳାଇ ଝରକା ପାଖକୁ ଗଲେ)

ମକରା ଝରକାରେ କ'ଣ ଦେଖିବେ ? ଝରକା ଆଗରେ ତ ପଟ୍ଟନାୟକ ଘର ଉଚ୍ଚା କୋଠା ।

ରାଜେନ୍ଦ୍ର ପଟ୍ଟନାୟକ ବାବୁ ଆଉ ଚମ୍ପତିବାବୁଘର ମଝିରେ ଯେଉଁ ଆକାଶ ଚେନାଏ ଦିଶୁଚି, ସେ ଆକାଶଟା ମତେ କିଛି ସମୟ

ଅଟକାଇ ରଖୁଛି ।

ମକରା ହାତେ ଓସାର ଫାଙ୍କ, ତା ଭିତରେ କ'ଣ ଏମିତି ଦେଖୁଚ ?

ରାଜେନ୍ଦ୍ର କେତେବେଳେ କେମିତି କେତେ ଖଣ୍ଡ ବାଦଲ ଆସୁଛି, ପୁଣି ଚାଲିଯାଉଛି । ସେଇ ବାଦଲର ଆକାର ପ୍ରତି ମୁହୂର୍ତ୍ତରେ ବଦଳି ଚାଲିଛି । ଗଧ, ହାତୀ, ଘୋଡା, ପାହାଡ, ମଣିଷ ଏମିତି କେତେ କ'ଣ ମୁଁ ମନେ ମନେ ତିଆରି କରେ ସେଇ ବାଦଲକୁ ନେଇ ।

ମକରା ମୁଁ ଏସବୁ କିଛି ବୁଝିପାରୁ ନେଇଁ ବାବୁ !

ରାଜେନ୍ଦ୍ର ବେଳେ ବେଳେ ଗୋଟେ ଅଧେ ଚଢ଼େଇ ସେଇ ଆକାଶ ଚେନାକ ଦେଇ ଉଡିଯାଏ ।

ମକରା ତମେ କ'ଣ ଆଗରୁ ଚଢ଼େଇ ଦେଖି ନଥିଲ ?

ରାଜେନ୍ଦ୍ର ମୁଁ ଚଢ଼େଇ ଦେଖି ନେଇଁ ?
(ହୋ ହୋ ହୋଇ ହସି ଉଠିଲେ) ତୁ ମତେ ହସେଇଲୁ ମକରା । ମୁଁ ଯେତେବେଳେ ସୁସ୍ଥ ଥିଲି ସେତେବେଳେ ପ୍ରତି ମାସରେ ଥରେ ଜିପ୍ ନେଇ ମୁଁ ଜଙ୍ଗଲକୁ ଯାଉଥିଲି । ବଣୁଆ କୁକୁଡା ଆଉ ବଣୁଆ କପୋତ ଶିକାର କରିବା ମୋର ସଉକ ଥିଲା ।

ମକରା କାଇଁ, କେବେ ତ ତମେ ଚଢ଼େଇ ମାରି ଘରକୁ ଆଣିବାର ମୁଁ ଦେଖିନେଇଁ ।

ରାଜେନ୍ଦ୍ର ତୋ ବାବୁଆଣୀ, ପକ୍ଷୀମାଂସ ଘରେ ପୂରାଇ ଦିଅନ୍ତି ନାହିଁ ବୋଲି ସେ କାମ ମୁଁ ସେଇ ଜଙ୍ଗଲରେ ବଢ଼େଇ ଦେଇ ଆସେ । ସେଇ ଜଙ୍ଗଲରେ ରୋଷେଇ ହୁଏ । ମୋ ସାଙ୍ଗରେ ମୋର କେତେ ଜଣ ବନ୍ଧୁ ଯାଇଥାନ୍ତି, ଆମେ ପିକ୍‌ନିକ୍ କରି ଫେରୁ ।

ମକରା ବଣରେ ଏତେ ଚଢ଼େଇ ଦେଖିଚ, ଏଇ ଝରକା ଫାଙ୍କରେ କ'ଣ ଦେଖିବ ?

ରାଜେନ୍ଦ୍ର ତୁ ସେ ସବୁ କିଛି ବୁଝିପାରିବୁ ନାହିଁ ମକରା । ଜିନିଷ ସମାନ ହେଲେ ବି ଭିନ୍ନ ଅବସ୍ଥାରେ ଥିବା ମଣିଷ ଆଖିକୁ ଭିନ୍ନ ଭିନ୍ନ ଦିଶେ ।

ମକରା ଆଜିତ କାହିଁ ଝରକା ଫାଙ୍କ ଆକାଶରେ କିଛି ଦିଶୁ ନେଇଁ ।

ବାଦଲ କି ଚଢ଼େଇ କିଛି ନାହିଁ ।

ରାଜେନ୍ଦ୍ର : ତାହେଲେ ସେ ଆଡକୁ ଅନେଇଁ କିଛି ଲାଭ ନାହିଁ । ଏଇ ବିରକ୍ତିକର ଚାରି ପାଖକୁ ଚାହିଁବା ଅପେକ୍ଷା, ଆଖି ବନ୍ଦ କରିବା ଭଲ ।

ମକରା ଦିନଟାରେ ଆଖି ବନ୍ଦ କରିବ ?

ରାଜେନ୍ଦ୍ର ଆଖି ଖୋଲିଲେ ମୁଁ କେବଳ ଏଇ ଘର ଭିତର ଜିନିଷ ଆଉ ଝରକା ଫାଙ୍କର ଆକାଶ ହାତକ ଦେଖେ । କିନ୍ତୁ ଆଖି ବନ୍ଦ କଲେ ମୁଁ ଢ଼େର ଜିନିଷ ଦେଖେ । ଅତୀତ ଦେଖେ ଯାହା ଅତି ସୁଖକର ଥିଲା । ପୁଣି ଭବିଷ୍ୟତ ଦେଖେ ଯାହା ଅତି ଭୟଙ୍କର ।

ମକରା ଆଖି ବୁଜିଲେତ ମତେ କିଛି ଦିଶେ ନେଇଁ, ତମେ କେମିତି ଏତେ କଥା ଦେଖବାବୁ ?

ରାଜେନ୍ଦ୍ର ଆଖି ବୁଜିଲେ ମୋ ଆଖି ଆଗରେ ଅତୀତର ଦିନଗୁଡ଼ିକ ଆସି ଠିଆ ହୁଅନ୍ତି । ଜରି ପିନ୍ଧା ଦିନ ସେ ଗୁଡାକ । ଅନେକ ଛବି ମୋ ଆଖି ଆଗରେ ଭିଡ ଜମାଏ । ମୋ ପିଲା ଦିନ, ଖେଳ କସରତ, ସ୍କୁଲ କଲେଜ ଜୀବନ, ଗାଆଁ ଜୀବନ ଆଉ ଗାଆଁର କେଇଟି ଆପଣାର ମୁହଁ, ଆମ୍ବତୋଟା, ଗାଆଁପୋଖରୀ, କୋଳିଗଛ, ଦୋଳିଖେଳ, ମୋ ବ୍ୟବସାୟ ମୋ କଳ କାରଖାନା, ଦିଲ୍ଲୀ, ବମ୍ବେ, କାଶ୍ମୀର, କଲିକତା ଏମିତି ଅନେକ ଦୃଶ୍ୟର ଭିଡ । ଆଖିବୁଜି ସେ ସବୁ ଦିନଗୁଡାକୁ ଆଖି ଆଗକୁ ଆଣିବା ବେଳେ ମୁଁ ଭୁଲିଯାଏ ମୋର ରୋଗ ଯନ୍ତ୍ରଣା ।

ମକରା ମୁଁ ଟିକେ ବଜାରରୁ ଆସୁଚି ବାବୁ, ତମେ ଟିକେ ସେମିତି ଆଖିବୁଜି ବସିଥା ।

ରାଜେନ୍ଦ୍ର ତୁ କେତେବେଳେ ଆସିବୁ ?

ମକରା ଘରେ ଅଳ୍ପ କେଇଟା ଜିନିଷ କିଣିକି ଦେଇ ଦେଇକି ଆସିବି ।

ରାଜେନ୍ଦ୍ର ଘରେ ତ ଅନେକ ଚାକର ଅଛନ୍ତି, ତୁ ନଗଲେ କ'ଣ ହେବ ନାହିଁ ?

ମକରା ନାଇଁ ବାବୁ, ମୁଁ ମୋ ଘର ସଉଦା କିଣିବି । ପୁଅଟା କାନ୍ଦୁଚି ତାର ପେଣ୍ଟ ଚିରି ଗଲାଣି, ଝିଅର କାନ୍ଧଗଳା ବେଗ୍ ପେଇଁ ତା ମାଆ ବାରବାରକି କଇଚି । ଆଜି ଯେମିତି ହେଲେ କଣିବାକୁ ହେବ ।

ରାଜେନ୍ଦ୍ର ଏସବୁ କିଣିବାକୁ ତୋ ପାଖରେ ପଇସା ନଥିବ । କେଉଟା ଟଙ୍କା ଦରମା, ଆଜି ଆସି ପଚିଶ ତାରିଖ ହେଲାଣି । ଚାବି ନେ ଆଲ୍‌ମିରା ଫିଟାଇ ଟଙ୍କା ଶହେଟା ନଇେଯା ।

ମକରା ନାଇଁ ବାବୁ । ମାଆ କି ସାନବାବୁ ଜାଣିଲେ ମତେ ଗାଳିଦେବେ ।

ରାଜେନ୍ଦ୍ର ସେମାନେ କେହି ଜାଣିବେ ନାହିଁ । ଏକଥା ମୁଁ କାହାକୁ କହିବି ନାହିଁ । ଖାଲି ଏତିକି ନୁହଁ, ଏଣିକି ତୋର ଯେତେବେଳେ ଯାହା ଦରକାର ହେବ ମୋତେ କହିବୁ ।

ମକରା ବାବୁ ! (ରାଜେନ୍ଦ୍ରଙ୍କଠାରୁ ଚାବିକାଠି ନେଲା)

ରାଜେନ୍ଦ୍ର ଶୀଘ୍ର ଆସିବୁ ।

ମକରା (ମକରା ଆଲମିରା ଖୋଲୁ ଖୋଲୁ) ମୁଁ ହେଇ ଗଲି ଆଉ ଆସିଲି ।

(ଟଙ୍କା ଆଣି ଆଲ୍‌ମିରା ବନ୍ଦ୍ କରି ଚାବିକାଠି ରାଜେନ୍ଦ୍ରଙ୍କୁ ଫେରାଇଲା )

ରାଜେନ୍ଦ୍ର ବେଶୀ ତରବର ହେବା ଦରକାର ନାହିଁ । କିଣା, କିଣି ସାରି ଘରେ ଦେଇକି ଆସିବୁ । ଧର, ମତେଟିକେ ବିଛଣାକୁ, ଧର । (ମକରା ଧରାଧରି କରି ରାଜେନ୍ଦ୍ରଙ୍କୁ ବେଡରେ ଶୁଆଇଲା ।)

ମକରା ମୁଁ ଏଇ ଅଧ ଘଣ୍ଟେ ଭିତରେ ଆସିବି । (ପ୍ରସ୍ଥାନ)

ରାଜେନ୍ଦ୍ର ନିଜର ଲୋକମାନେ ଯେତେବେଳେ ଦୂରେଇ ଯାଉଛନ୍ତି ମକରାକୁ ପଇସା ଦେଇ କିଣିବା ଛଡା ମୋର ବା ଆଉ କି ଉପାୟ ଅଛି ।

(ରାଜେନ୍ଦ୍ର ଆଖି ବୁଜି ତାଙ୍କ ଅତୀତ ଦିନମାନଙ୍କୁ ଆବାହନ କରିବାକୁ ଚେଷ୍ଟା କଲେ । ଏଇ ସମୟରେ ଘର ଭିତରକୁ ପଶି ଆସିଲେ ସୁଶାନ୍ତ, ପ୍ରଶାନ୍ତ ଓ ଅନୁପମା ।)

ସୁଶାନ୍ତ ବାପା ନିଦ ଯାଇଛନ୍ତି ବୋଧହୁଏ । ନିଦ ଇଞ୍ଜେକସନ୍ କେତେବେଳେ ଦିଆ ଯାଇଥିଲା ?

ରାଜେନ୍ଦ୍ର (ସେମିତି ଆଖିବୁଜି) ନା, ମୁଁ ଶୋଇ ନେଇଁ ।

ସୁଶାନ୍ତ ନମସ୍କାର ବାପା ! ଏମିତି ଆଖିବୁଜିଛ କାହିଁକି ?

ରାଜେନ୍ଦ୍ର ଏଇ ଚାରିକଡର ଜିନିଷ ଦେଖି ଦେଖି ଭାରି ବୋର୍ ଲାଗିଲାଣି ।

ତୁ କେତେବେଳେ ଆସିଲୁ ସୁଶାନ୍ତ ?

ସୁଶାନ୍ତ : ଆଜି ଆସିଛି ।

ପ୍ରଶାନ୍ତ ତୁମେ ଆଖି ଖୋଲ ବାପା !

ରାଜେନ୍ଦ୍ର ମକରା ତା ଘରକୁ ଯାଇଛି । ଲଙ୍ଗ୍ ବେଞ୍ଚଟା ବାହାରେ ଅଛି, ଘର ଭିତରକୁ ନେଇଆ ପ୍ରଶାନ୍ତ । ସମସ୍ତେ ବସ ।

ସୁଶାନ୍ତ ତୁମେ ବ୍ୟସ୍ତ ହୁଅନା ବାପା ! ଆମେ ବସୁଛୁ । ଥାଉ, ତୁମେ ଉଠନା । ରୁହ, ମୁଁ ତୁମ ପିଠିତଳେ ତକିଆଟେ ଦଉଚି । ହଁ, ସେମିତି ।

ରାଜେନ୍ଦ୍ର ନା, ମତେ ସେ ହୁଇଲ୍ ଚେୟାରକୁ ଧର ।

(ସୁଶାନ୍ତ ଓ ପ୍ରଶାନ୍ତ ଦୁହେଁ ଧରାଧରି କରି ରାଜେନ୍ଦ୍ରକୁ ହୁଇଲ୍ ଚେୟାରରେ ବସାଇଲେ ।)

ରାଜେନ୍ଦ୍ର ଶେଷ ଜୀବନରେ ଅନେକ ଲୋକ ଅନେକ କଥା ମାଗନ୍ତି ।

ପ୍ରଶାନ୍ତ ତୁମର କ'ଣ ଦରକାର କୁହ ବାପା ।

ସୁଶାନ୍ତ ସେ ଜିନିଷ ଯେତେ ଦୁର୍ଲଭ ହେଲେ ବି ମୁଁ ବିଦେଶରୁ ମଗାଇ ଆଣିବି ।

ଅନୁପମା ତୁମ ଖୁସି ପାଇଁ ମୁଁ ଜୀବନ ଦେବାକୁ ପ୍ରସ୍ତୁତ ଅଛି । ତୁମର କ'ଣ ଦରକାର କୁହ ।

ରାଜେନ୍ଦ୍ର ମୁଁ ଯାହା ମାଗିବି ତାହା ସେମିତି କିଛି ମୂଲ୍ୟବାନ କି ଦୁଃସ୍ପ୍ରାପ୍ୟ ନୁହଁ ।

ପ୍ରଶାନ୍ତ ତୁମେ କ'ଣ ଚାହୁଁଚ କୁହ ବାପା !

ରାଜେନ୍ଦ୍ର ମୁଁ ପ୍ରଥମେ ମୋର ବଡ ପୁଅକୁ ମୋର ଅନ୍ତିମ ଅଭିଳାଷ ପୂରଣ କରିବା ପାଇଁ ସୁଯୋଗ ଦେବି ।

ସୁଶାନ୍ତ ତୁମ ଅନ୍ତିମ ଅଭିଳାଷ ପ୍ରକାଶ କର ।

ରାଜେନ୍ଦ୍ର ମୋ ଜୀବନରେ ମୁଁ ସବୁ ପାଇଛି । ଅନୁପମା ପରି ସୁନ୍ଦରୀ, ଶିକ୍ଷିତା ସ୍ତ୍ରୀ, ସୁଶାନ୍ତ, ପ୍ରଶାନ୍ତ ପରି ଯୋଗ୍ୟ ପୁଅ, ଇନ୍ଦ୍ରାଣୀ ଓ ରାଜ୍ୟଶ୍ରୀଙ୍କ ପରି ଶିକ୍ଷିତା ବୋହୂ, କୋଠାବାଡି, ମଟରଗାଡି, କଳକାରଖାନା, ବ୍ୟାଙ୍କ ବାଲାନ୍ସ, ସମ୍ମାନ, ପ୍ରତିପତ୍ତି । ଏସବୁଠୁ ଅଧିକ କ'ଣ ଜଣେ ମଣିଷ ଚାହେଁ ?

ସୁଶାନ୍ତ ତେବେ ତୁମେ କ'ଣ କହିବାକୁ ଚାହ ?

| | | |
|---|---|---|
| ରାଜେନ୍ଦ୍ର | | ମୋ ଭବିଷ୍ୟତ ପାଇଁ ମୁଁ ଯେଉଁ ଟଙ୍କା, ସୁନା, ସମ୍ପତ୍ତି ଠୁଳ କରିଥିଲି ବର୍ତ୍ତମାନ ମୋର ସେସବୁ କିଛି କାମରେ ଲାଗୁନାହିଁ । |
| ପ୍ରଶାନ୍ତ | | ଆଉ ତେବେ ତୁମର କ'ଣ ଦରକାର ବାପା ? |
| ସୁଶାନ୍ତ | | କୁହ ବାପା, ତୁମେ ଆଉ କଣ ଚାହଁ ? |
| ରାଜେନ୍ଦ୍ର | | (ବାଷ୍ପାକୁଳ କଣ୍ଠରେ) ଦେଇ ପାରିବୁ ସୁଶାନ୍ତ ? |
| ସୁଶାନ୍ତ | | ମୁଁ ଅକୃତଜ୍ଞ ନୁହଁ, ମୁଁ ପାରିବି । |
| ରାଜେନ୍ଦ୍ର | | ପାରିବୁ ? ମତେ ଟିକେ ବିଷ ଦେଇ ପାରିବୁ ? |
| ସୁଶାନ୍ତ ଓ ପ୍ରଶାନ୍ତ | | ବାପା ! |
| ରାଜେନ୍ଦ୍ର | : | ଏ ଯନ୍ତ୍ରଣା ମୁଁ ଆଉ ସହି ପାରୁ ନାହିଁ । |
| ସୁଶାନ୍ତ | | ବାପା ! |
| ରାଜେନ୍ଦ୍ର | : | ବର୍ତ୍ତମାନର ଦୁଃଖ, ଯନ୍ତ୍ରଣାକୁ ମଣିଷ ଅଙ୍ଗପାତି ସହିଯାଏ ତାର ଭବିଷ୍ୟତ ଦିନ ଗୁଡାକର ମୁହଁ ଉପରେ ଢ଼ାଙ୍କୁଣୀ ପଡିଥାଏ ବୋଲି । ସିଏ ଆଶା କରେ ଭବିଷ୍ୟତର ଦିନ ତା ପାଇଁ ସୁଖ ଆଣିବ । ସେଇ ଭବିଷ୍ୟତର ସୁଖ ହିଁ ବର୍ତ୍ତମାନର ଦୁଃଖ ସହିବକୁ ତା ମନରେ ବଳଦିଏ । ଦୁଃଖ ସହିବା ପାଇଁ ଦିହର ବଳଠୁ ମନର ବଳ ବେଶୀ ଲୋଡା । କିନ୍ତୁ ମୋ ଭବିଷ୍ୟତ ଦିନ ଗୁଡାକର ମୁହଁ ମତେ ଜଳଜଳ ଦିଶୁଛି । ବର୍ତ୍ତମାନଠୁ ଭବିଷ୍ୟତ ଆହୁରି ଭୟଙ୍କର । |
| ସୁଶାନ୍ତ | | ତୁମେ ଅଯଥାରେ ଅତ୍ୟଧିକ ଭୟଭୀତ ହେଉଛ ବାପା ! ତୁମେ ନିୟମିତ ଔଷଧ ଖାଅ, ଭବିଷ୍ୟତ ଦିନ ଗୁଡାକ ତୁମର ଯନ୍ତ୍ରଣା ଶୂନ୍ୟ ଭାବରେ କଟିବ । |
| ରାଜେନ୍ଦ୍ର | | ନା, ପେନ୍‌କିଲର ଆଉ କିଛି କାମ ଦେଉ ନାହିଁ । ମୋ ଯନ୍ତ୍ରଣା କମାଇବା ପାଇଁ ବର୍ତ୍ତମାନ ଔଷଧଠୁ ବିଷର ଆବଶ୍ୟକତା ବେଶୀ । |
| ସୁଶାନ୍ତ | : | ତାହେଲେ ତୁମେ ନିୟମିତ ନିଦ ଇଂଜେକସନ୍ ନିଅ । |
| ରାଜେନ୍ଦ୍ର | : | ଇଂଜେକସନ୍ ଦ୍ୱାରା ମାତ୍ର ଦୁଇ ଘଣ୍ଟାର ନିଦ ତୁ ମତେ ଦେଇ ପାରିବୁ । ଏଇ ନିଦ୍ରାର ନାମ କ୍ଷଣମୃତ୍ୟୁ । କିନ୍ତୁ ମୁଁ ତୋତେ କ୍ଷଣ ମୃତ୍ୟୁ ମାଗୁନାହିଁ, ମାଗୁଛି ଚିର ନିଦ୍ରା ଯାହା ମୋର |

ସମସ୍ତ ଦୁଃଖ, ଯନ୍ତ୍ରଣା ଦୂର କରି ମୋତେ ଚିର ଶାନ୍ତି ଦେବ । କ'ଣ ସୁଶାନ୍ତ ମତେ ଟିକେ ବିଷ ଦେଇ ପାରିବୁ ?

ସୁଶାନ୍ତ (ନୀରବରେ ମୁଣ୍ଡ ତଳକୁ ନୁଆଇଁ ଦେଲା)

ରାଜେନ୍ଦ୍ର ସୁଶାନ୍ତ ନୀରବ ରହିଲା । ତୁ ଏଥର କହ ପ୍ରଶାନ୍ତ, ତୁ ମୋର ଦ୍ୱିତୀୟ ସନ୍ତାନ । ସବୁଠୁ ବେଶୀ ଅଲିଅଳରେ ମୁଁ ତୋତେ ବଢ଼ାଇଥିଲି । ତୁ ମୋର ଇଛା ପୂରଣ କର ।

ପ୍ରଶାନ୍ତ (ନୀରବ)

ରାଜେନ୍ଦ୍ର ମୁଁ ଜାଣେ ତୁମେ କେହି ମୋତେ ବିଷ ଦେଇ ଆଇନ୍ ଆଖିରେ ଅପରାଧୀ ହେବା ପାଇଁ ସାହାସ କରିବ ନାହିଁ । ମୁଁ ଜାଣେ ବାପାର ଦୁଃଖ, ଯନ୍ତ୍ରଣା ଅପେକ୍ଷା ତୁମ ନିଜର ସୁଖ ସୁବିଧା ତୁମ ଆଖିରେ ବଡ଼ ।

ଅନୁପମା ପାଗଳଙ୍କ ପରି ଏମିତି କ'ଣ ତୁମେ ଗପୁଛ ?

ରାଜେନ୍ଦ୍ର ଏଥର ତୁମ ପାଳି ଅନୁପମା । ତୁମେ ମୋର ଅର୍ଦ୍ଧାଙ୍ଗିନୀ । ସୁଖ, ଦୁଃଖରେ ମୋର ସହଯାତ୍ରୀ ହେବ ବୋଲି ଅଗ୍ନୀକୁ ସାକ୍ଷୀରଖି ତୁମେ ମୋତେ ବିବାହ କରିଛ । ଏବେ କୁହ, ତୁମେ କ'ଣ ମୋର ଏ ଶେଷ ଇଛା ପୂରଣ କରିପାରିବ ନାହିଁ ?

ଅନୁପମା ହୃଦୟର କଥା ଜାଣି ପାରୁଥିଲେ ଜାଣନ୍ତ ମୁଁ ତୁମ ପାଇଁ କେତେ ଭାବୁଛି । ଏ ଯନ୍ତ୍ରଣାରୁ ତୁମକୁ ଉଦ୍ଧାର କରିବାକୁ ମୁଁ ପ୍ରତିଦିନ ଠାକୁରଙ୍କୁ ଜଣାଉଛି ।

ରାଜେନ୍ଦ୍ର ଏ ରୋଗ ହାତରୁ ରକ୍ଷା କରିବା ପାଇଁ ଏପର୍ଯ୍ୟନ୍ତ କୌଣସି ଔଷଧ ବାହାରି ନାହିଁ । ତେଣୁ ଏ ରୋଗ ହାତରୁ ମୁକ୍ତି ପାଇବାକୁ ହେଲେ କେବଳ ମୃତ୍ୟୁର ଆଶ୍ରୟ ନେବାକୁ ହେବ ।

ଅନୁପମା ଏ ସବୁ ଅଶୁଭ କଥା ତୁମେ ବନ୍ଦକର ।

ରାଜେନ୍ଦ୍ର ମୁଁ ଜାଣେ ଏମିତି ଗୁଡେ କହି ତୁମେ ପ୍ରକୃତ କଥାକୁ ଆଡେଇ ଯିବ ।

ସୁଶାନ୍ତ ତୁମେ ଜାଣ ବାପା, ବିଷ ଦେବା ଆଇନ ଆଖିରେ ଅପରାଧ ।

ରାଜେନ୍ଦ୍ର ଏ ଆଇନ୍ କଂପ୍ୟୁଟର ପରି ହୃଦୟହୀନ । ଯେତେବେଳେ ଗୋଟେ ମଣିଷ ପାଇଁ ବିଷଟା ଔଷଧଠୁ ଅଧିକ ଦରକାରୀ ସେ ଜାଗାରେ ବି ନିର୍ଦ୍ଦୟ ଭାବରେ ଆଇନ୍ ତାର ପଥରୋଧ

କରୁଛି ।

| | |
|---|---|
| ସୁଶାନ୍ତ | ଏ ସବୁ ତୁମେ କ'ଣ କହୁଛ ବାପା ? |
| ରାଜେନ୍ଦ୍ର | ତୁ ଜଣେ ଡାକ୍ତର ସୁଶାନ୍ତ ! ତୁ କହ ଏଇଟା ଜୀବନ ନା ଦହଗଞ୍ଜ । ଏଇଟା ଜୀବନ ନୁହଁ, ଜୀବନ୍ତ ଦହନ । ବର୍ତ୍ତମାନ ପରିସ୍ଥିତିରେ ଔଷଧଟା ମୋ ପାଇଁ ବିଷ କିନ୍ତୁ ବିଷଟା ଔଷଧ । |
| ଅନୁପମା | ତମେ ଏସବୁ ପାଗଳାମୀ ବନ୍ଦ୍‌କର । |
| ରାଜେନ୍ଦ୍ର | ତୁମେ ସମସ୍ତେ ସ୍ୱାର୍ଥପର । ସମସ୍ତେ ନିଜର ନିରାପତ୍ତା ପ୍ରତି ସଚେତନ । ନିଜର ନିରାପତ୍ତା ବିପନ୍ନ ହେବା ଭୟରେ ଅନ୍ୟର ଦୁଃଖ, ଯନ୍ତ୍ରଣା, କାକୁତି, ମିନତି ପ୍ରତି କେହି କର୍ଣ୍ଣପାତ କରୁ ନାହିଁ । |
| ଅନୁପମା | କେବଳ ନୀରବରେ ଲୁହ ଗଡାଇବା ଛଡା ଆଉ କିଏ ବା କ'ଣ କରିପାରିବ ? |
| ରାଜେନ୍ଦ୍ର | ସେ ମନଭୁଲାଣିଆ ବାଜେକଥା ମୋ ଆଗରେ ତୁମେ କୁହନା । ମୋର ସମସ୍ତ ସମ୍ପତ୍ତି ବିନିମୟରେ ତୁମ ଭିତରୁ ଯଦି କିଏ ମୋତେ ବିଷ ଟେକାଏ ଦେଇ ପାରିବ, ତେବେ ଆଗେଇ ଆସ, ମୁଁ ତାଆ ନାଆଁରେ ମୋର ସବୁ ସମ୍ପତ୍ତି ଉଇଲ୍ କରିଦେବି । (ସମସ୍ତେ ନୀରବରେ ମୁଣ୍ଡ ତଳକୁ କରି ଠିଆହେଲେ ।) ତୁମେ ସମସ୍ତେ ମତଲବୀ, ତୁମେ ସମସ୍ତେ ମୋ ଆଗରୁ ଚାଲିଯାଅ । ଶୀଘ୍ର ଚାଲିଯାଅ । I say get out. |
| | (ସମସ୍ତେ ସେ ବଖରା ଛାଡି ନୀରବରେ ଚାଲିଗଲେ ।) |



ଆନଂଦ ଚଂଦ୍ର ପହି

# ଚତୁର୍ଥ ଦୃଶ୍ୟ

(ହୁଇଲ ଚେୟାରରେ ବସି ରାଜେନ୍ଦ୍ର ଝରକାବାଟେ ବାହାରକୁ ଚାହିଁଥିଲେ । ମକରା ରାଜେନ୍ଦ୍ରଙ୍କ ବିଛଣା ଝାଡୁଥିଲା ।)

ରାଜେନ୍ଦ୍ର   ମକରା !

ମକରା   ଆଜ୍ଞା !

ରାଜେନ୍ଦ୍ର   ଦେଖିଲୁ, ଦେଖିଲୁ, କିଏ ଯାଉଚି । ପୃଥୀରାଜ ପରି ଦେଖାଯାଉଛି ।

ମକରା   ନାଇଁମ, ସିଏ ତାଙ୍କ କାରଖାନା ଛାଡି ଇଆଡେ କୁଆଡେ ଆସିବେ ?

ରାଜେନ୍ଦ୍ର   ତାରି ପରି ଦିଶୁଚି । ତାକୁ ଟିକେ ଡାକିଲୁ ।

ମକରା   ହଉ ଡାକୁଚି । (ପ୍ରସ୍ଥାନ)

ରାଜେନ୍ଦ୍ର   ପ୍ରଥମେ ପ୍ରଥମେ ଅନେକ ଲୋକ ଆସୁଥିଲେ । ଆଜିକାଲି ଆଉ କେହି ଆସୁ ନାହାଁନ୍ତି । ହଁ, ଥରେ ଥରେ ଆସି ଦେଖିଗଲେ, ନିଜର କାମଛାଡି କିଏ ଆଉ ଆସିବ ? କାହିଁକି ବା ଆସିବ ?

(ଏଇ ସମୟରେ ପ୍ରବେଶ କଲେ ପୃଥୀରାଜବାବୁ । ବୟସ୍କଲୋକ, ଶିଳ୍ପପତି । ରାଜେନ୍ଦ୍ରଙ୍କ ବନ୍ଧୁ ।)

ପୃଥୀରାଜ :   ନମସ୍କାର ରାଜେନ୍ଦ୍ର ବାବୁ ! କେମିତି ଅଛନ୍ତି ?

ରାଜେନ୍ଦ୍ର   ନମସ୍କାର । ବସନ୍ତୁ ।

(ମକରା ଚେୟାରଟେ ଆଣି ଦେଲା ଓ ବିଛଣା ଝଡାଝଡି କାମରେ ଲାଗିଲା ।)

ରାଜେନ୍ଦ୍ର   କେମିତି ଆଉ କ'ଣ ? କ୍ୟାନସର ରୋଗୀର ଅବସ୍ଥା କେଉଁଦିନ ବଦଳେ ? କେବଳ ମୃତ୍ୟୁକୁ ଅପେକ୍ଷା କରି ପଡି ରହିବା କଥା । ହଉ ଛାଡନ୍ତୁ ସେକଥା । ଆପଣ କୁଆଡେ ଶୁଭକାମରେ ଅନୁକୂଳ

କରି ବାହାରିଥିଲେ, ମୁଁ ଡକାଇ ଆଣିଲି ।

ପୃଥୀରାଜ : ଶୁଭ କାମ କ'ଣ ? ମୁଁ ଏଇ Industry ମନ୍ତ୍ରୀଙ୍କ ଘରକୁ ଟିକେ ଯାଉଥିଲି ।

ରାଜେନ୍ଦ୍ର କ'ଣ ଚାଲି ଚାଲି ?

ପୃଥୀରାଜ : ନାଇଁ ଯେ.... ମିନିଷ୍ଟରଙ୍କ ଘର ଆଗରେ ଗାଡିଟା ରଖିଲେ ସାମ୍ବାଦିକମାନଙ୍କର ଶାଗୁଣା ଆଖି ପଡିଯବ । ସେଇଥି ପାଇଁ ଗାଡିଟା କିଛି ବାଟରେ ଥୋଇ ଚାଲି ଚାଲି ଯାଉଥିଲି ।

ରାଜେନ୍ଦ୍ର ମକରା !

ମକରା ଆଜ୍ଞା !

ରାଜେନ୍ଦ୍ର ଯା, ଦିଇଟା କଫି ନେଇଆ ।

ପୃଥୀରା ନା, ଥାଉ । ମୁଁ ଏଇଲେ ପିଇକି ଆସିଛି ।

ରାଜେନ୍ଦ୍ର କଫି ପିଇବାରେ କ'ଣ ଅଛି ? ଆରେ ତୁ ଠିଆ ହେଲୁ କ'ଣ ଯା ନେଇଆ । (ମକରା ପ୍ରସ୍ଥାନ)

ରାଜେନ୍ଦ୍ର ଆପଣ ଗୋଟେ କାମରେ ଯାଉଥିଲେ, ମୁଁ ବିଗାଡି ଦେଲି । ଟିକେ ବସି ଯାଆନ୍ତୁ ପୁଣି ସମୟ ଶୁଭ ହୋଇଯିବ ।

ପୃଥୀରାଜ : ଆପଣ ନଡାକି ଥିଲେ ବି ମୁଁ ମନ୍ତ୍ରୀଙ୍କ ଘରୁ ଫେରିବା ବେଳେ ଆପଣଙ୍କ ପାଖକୁ ଆସିଥାନ୍ତି । ଡାକି ଦେଲେ ଭଲ ହେଲା ।

ରାଜେନ୍ଦ୍ର କାରଖାନା କେମିତି ଚାଲିଛି ।

ପୃଥୀରାଜ : ଯେତେ ଜାଗାରେ ପାଣି ସେତେ ଜାଗାରେ ମାଛ ପରି କାରଖାନା ମାତ୍ରକେ ଶ୍ରମିକ ଧର୍ମଘଟ, ବିଶୃଙ୍ଖଳା । ଯେତେ ଦେଲେ ବି ଆଉ ଅଧିକ ପାଇଁ ଦାବି ।

ରାଜେନ୍ଦ୍ର କାରଖାନା କ'ଣ ବନ୍ଦ୍ ?

ପୃଥୀରାଜ : ନାଇଁ ସେ ଚାଲିବା କିଛି ନୁହଁ । ଛାଡନ୍ତୁ ସେକଥା । ସେ କଥା ଆଲୋଚନା କଲେ କେବଳ ମନ ଦୁଃଖ । ଆପଣଙ୍କ ଦେହ କେମିତି ଅଛି କୁହନ୍ତୁ ?

ରାଜେନ୍ଦ୍ର ଅରେତ କହିଲି କ୍ୟାନସର ରୋଗୀର ପାଦ ଦିନକୁ ଦିନ ତଳକୁ ତଳକୁ ଦବି ଦବି ଯାଏ । ମତେ କ୍ୟାନସର ହେବା ତିନିବର୍ଷ ପାଖାପାଖି ହେଲାଣି ।

ପୃଥୀରାଜ : ଝିଅ, କ୍ବାଇଁ ଆଜିକାଲି ଆମେରିକାରେ ପରା ?

ରାଜେନ୍ଦ୍ର : ହଁ ।
ପୃଥୀରାଜ : ସେମାନେ ଆପଣଙ୍କୁ ଦେଖିବାକୁ ଆସିଥିଲେ ?
ରାଜେନ୍ଦ୍ର : ହଁ ସେମାନେ ଗତବର୍ଷ ଅଗଷ୍ଟ ମାସରେ ଆସିଥିଲେ, ଚାରିଦିନ ରହିକି ଗଲେ ।
ପୃଥୀରାଜ : ଆପଣଙ୍କ ପୁଅ, ବୋହୂ ?
ରାଜେନ୍ଦ୍ର : ସେମାନେ ମୋର ସେବା କରି କରି ଅତିଷ୍ଠ ।
(ଏହି ସମୟରେ ମକରା କଫି ଆଣି ଦେଇଛି । ଦୁଇବନ୍ଧୁ କଫି ପିଇଲେ)
ରାଜେନ୍ଦ୍ର : ମୋ କୁଣ୍ଢ ଭିତରୁ ମୁକ୍ତ ହେବା ପାଇଁ ମୋର ରକ୍ତ ସମ୍ପର୍କମାନେ ଛାଟିପିଟି ହେଉଛନ୍ତି । ଟାଣି ହେଉଛନ୍ତି ବିଭିନ୍ନ ବାଟରେ ଫିଟିଯିବା ପାଇଁ ।
ପୃଥୀରାଜ : ସେ ବନ୍ଧନ ତୁଟିବା କ'ଣ ଏତେ ସହଜ ?
ରାଜେନ୍ଦ୍ର ମୋଠୁ ସେମାନଙ୍କ ପର୍ଯ୍ୟନ୍ତ ଲମ୍ବିଥିବା ସମ୍ପର୍କ ରେଖାରେ ଥିବା ରକ୍ତ ଏବେ ପାଣି ଫାଟି ଗଲାଣି । ସେଠି ବହୁଛି ତୁଚ୍ଛା ପାଣି ଧାରଟିଏ । କାହାକୁ ଟାଣି ଧରିବା ପାଇଁ ସେଥିରେ ଅଠା ନାହିଁକି ନିଷ୍ଠା ନାହିଁ ।
ପୃଥୀରାଜ : ଆପଣ ଏ ସବୁ କ'ଣ କହୁଛନ୍ତି ?
ରାଜେନ୍ଦ୍ର ତୁମେ ମୋର ବନ୍ଧୁ । ତୁମକୁ ସବୁ ଖୋଲି କହିଦେଲେ ମୋ ମନଟିକେ ହାଲୁକା ହୋଇଯିବ । ମୁଁ ଏବେ ଗୋଡ ଟେକିଲିଣି ଆଉ ପାରିକି । ମୋ ବେକରେ ପଘା ନାହିଁ । ଆଖି ଝଲସାଇ ଟାଣି ରଖିବାକୁ ମୋ ଆଗରେ ରଙ୍ଗ ନାହିଁ । ମୋର କିଛି ବନ୍ଧନ ନଥାଇବି ମୁଁ ଖୁଣ୍ଟି ପାଖରେ କାହିଁକି ପଡି ରହିଛି କହି ପାରିବେ ?
ପୃଥୀରାଜ : କାହିଁକି ?
ରାଜେନ୍ଦ୍ର ଦେହ ଉଠାଇ ଚାଲିପାରୁ ନାହିଁ ବୋଲି । ମୋ ପାଇଁ ବନ୍ଧନ କେବଳ ମୋର ଏଇ ଦେହଟା । ଏ ଦେହଟାରୁ ବାହାରି ପାରିଲେ ମୁଁ ମୁକ୍ତ ହୋଇଯିବି ।
ପୃଥୀରାଜ : ଆପଣ ଏତେଟା ଭାବ ପ୍ରବଣ ହୁଅନ୍ତୁ ନାହିଁ ।
ରାଜେନ୍ଦ୍ର ମୋ ମନର ପାଦ ଭୂଇଁ ଛାଡି ସାରିଲାଣି, କିନ୍ତୁ ଦେହର ପାଦ

ତକୁ ଉଠୁ ନାହିଁ । ମୁଁ ଅନେକ ସମୟରେ ଆଖି ବୁଜି ମୃତ୍ୟୁକୁ ଅପେକ୍ଷା କରୁଛି, ସିଏ ଆସିବ ମୁଁ ତା ସାଙ୍ଗରେ ଚାଲିଯିବି । କିନ୍ତୁ ସେ ନିଷ୍ଠୁର ମୃତ୍ୟୁ ଆସୁ ନାହିଁ । ଅପେକ୍ଷା କରି କରି ଖୁବ୍ କଷ୍ଟ ଲାଗିଲାଣି । ମୁଁ ଆଉ ପାରୁ ନାହିଁ ।
(ଏହି ସମୟରେ ସୁଶାନ୍ତ ଆସି ।)

ସୁଶାନ୍ତ ମଉସା ନମସ୍କାର ।

ପୃଥୀରାଜ : ଏଥର ବାପାଙ୍କୁ ତୁମ ସାଙ୍ଗରେ ଦିଲ୍ଲୀକୁ ନେଇ ଯା । ସେଠି ପାଖରେ ରଖିଲେ ସବୁ ସୁବିଧା ହେବ ।

ସୁଶାନ୍ତ ନାଇଁ ମଉସା । ବାପାଙ୍କର ସବୁ ଚିକିତ୍ସା ସରିଛି । କେବଳ ଆଗ୍ନେନ୍ଦ୍ରିଡ୍ ଗୋଡଟାର ଅପରେସନ୍ ଆମ ଘର ପାଖ ଡାକ୍ତର ମାଥୁରଙ୍କ କ୍ଲିନକ୍‌ରେ ହେବ ।

ରାଜେନ୍ଦ୍ର : ଏ ଗୋଡଟାର ଅପରେସନ ଦୁଇଥର ହୋଇ ସାରିଛି, ଆଉ କି ଅପରେସନ୍ ହେବ ?

ସୁଶାନ୍ତ ଆପଣଙ୍କ ଗୋଡଟା ସେପ୍‌ଟିକ ହୋଇଗଲାଣି ।

ରାଜେନ୍ଦ୍ର ସେଥି ପାଇଁତ ପ୍ରତିଦିନ ଦୁଇଥର ଡ୍ରେସିଂ ହେଉଛି । ସେଇ ଯଥେଷ୍ଟ । ଆଉ ଅପରେସନ୍ କ'ଣ ଦରକାର ?

ପୃଥୀରାଜ : ଏ ସବୁ ଦିଗରେ ଡାକ୍ତରଙ୍କ ପରାମର୍ଶ ଗ୍ରହଣ କରିବା ଭଲ । ତାଛଡା ଆପଣଙ୍କ ପୁଅ ସୁଶାନ୍ତ ଜଣେ ଦକ୍ଷ ଡାକ୍ତର । ଆପଣ ସେ ବିଷୟରେ ମୁଣ୍ଡ ଖେଳାଇବା ମୋଟେ ଦରକାର ନାହିଁ । ଆଚ୍ଛା ରାଜେନ୍ଦ୍ରବାବୁ ! ମୁଁ ଏଥର ଆସୁଛି ।

ରାଜେନ୍ଦ୍ର : ହଉ ଯାଆନ୍ତୁ । ସୁବିଧା ପାଇଲେ ଆଉ କେତେବେଳେ ଟିକେ ଆସିବେ । ଗପସପ ହେଲେ କିଛି ସମୟ ଭଲରେ କଟିବ ।

ପୃଥୀରାଜ : ସୁବିଧା ହେଲେ ନିଶ୍ଚୟ ଆସିବି । (ପ୍ରସ୍ଥାନ)

ସୁଶାନ୍ତ : ମକରା !

ମକରା (ପ୍ରବେଶି) କ'ଣ ବାବୁ ?

ସୁଶାନ୍ତ : ବାପା ! ଆପଣ ଟିକେ ରେଷ୍ଟ ନିଅନ୍ତୁ । ଧର ମକରା ବାପାଙ୍କୁ ବେଡରେ ଶୁଆଇ ଦେବା ।

ରାଜେନ୍ଦ୍ର : ନା, ସୁଶାନ୍ତ ! ତୁ ଯା, ମୁଁ ଆଉ ଟିକେ ବସିବି ।

ସୁଶାନ୍ତ : ଆମେ ବେଡ୍‌ରେ ଶୁଆଇ ଦେଉଛୁ । ଆପଣଙ୍କ ପିଠି ପାଖରେ

ଦୁଇଟା ତକିଆ ଦେବି, ଆପଣ ଡେରି ହୋଇ ବସିବେ । ନିଦ ଆସିଲେ ଶୋଇ ଯିବେ ।

ରାଜେନ୍ଦ୍ର ନିଦତ ଆଉ ଜମା ହେଉ ନାହିଁ ।

ସୁଶାନ୍ତ ମୁଁ ହାଇ ପାୱାରର ନିଦ ବଟିକା ଆଣିଛି, ଖାଇ ଦେଲେ ନି· ହୋଇଯିବ । ମକରା ଧର ।

ରାଜେନ୍ଦ୍ର : ହଉ, ଯାହା ତୋ ଇଚ୍ଛା ।

(ସୁଶାନ୍ତ ଓ ମକରା ରାଜେନ୍ଦ୍ରଙ୍କୁ ଧରାଧରି କରି ଖଟ ଉପରେ ଶୁଆଇ ଦେଲେ ।)



ଆନଂଦ ଚଂଦ୍ର ପହି

# ପଞ୍ଚମ ଦୃଶ୍ୟ

(ରାଜେନ୍ଦ୍ରଙ୍କ ଗୋଡ ଅପରେସନ୍ ସରିଯାଇଛି । ରାଜେନ୍ଦ୍ର ବେଡ ଉପରେ ଶୋଇଛନ୍ତି । ତାଙ୍କ ଚାରିପାଖରେ ବେଢ଼ି ଠିଆ ହୋଇଛନ୍ତି ତାଙ୍କର ସ୍ତ୍ରୀ, ଦୁଇପୁତ୍ର ଓ ଚାକର ମକରା ।)

ପ୍ରଶାନ୍ତ  ଭାଇ ! ବାପାଙ୍କର ସେନ୍ସ କେତେବେଳେ ଫେରିବ ? ଅପରେସନ୍ ବେଳେ ଯେଉଁ ଆନେସ୍‌ଥେସିଆ ଦିଆଯାଇଥିଲା ତାର ପ୍ରଭାବ କ'ଣ ଏପର୍ଯ୍ୟନ୍ତ ଅଛି ?

ସୁଶାନ୍ତ  ପୋଷ୍ଟ ଅପରେସନ୍ ପରିଅଡରେ ରୋଗୀ ତିନି, ଚାରି ଘଣ୍ଟା ଏମିତିକି ପାଞ୍ଚ, ଛଅ ଘଣ୍ଟା ପର୍ଯ୍ୟନ୍ତ ବି ଅଚେତ ରୁହନ୍ତି । ବାପାଙ୍କର ଚେତା ଫେରିବାକୁ ଆଉ ବେଶୀ ଡେରି ନାହିଁ । ଅପରେସନ୍ ସରିଲା ଦିନ ବାରଟାରେ । ଆମେ କ୍ଲିନିକ୍‌ରୁ ତାଙ୍କୁ ଷ୍ଟେଚ୍‌ରରେ ଏଠିକି ଆଣିବାର ତିନିଘଣ୍ଟା ହୋଇଗଲାଣି । ଗୋଟେ ବ୍ଲଡ୍ ଆଉ ଗୋଟେ ସାଲାଇନ୍ ଦିଆ ସରିଲାଣି ।

ଅନୁପମା :  ତୁମେ ଦୁଇ ଭାଇ ସକାଳୁ ଆସିଛ । ମୁଁ ଅଛି, ତୁମେ ଯା ଖିଆପିଆ କରି ଆସିବ ।

ପ୍ରଶାନ୍ତ  ନାଇଁ ବୋଉ ! ବାପାଙ୍କ ଚେତା ଫେରିଲେ ଆମେ ଯିବୁ । ନହେଲେ ବାପା ଯୋଉ ସେଣ୍ଟିମେଣ୍ଟାଲ୍ ପଛରେ କ'ଣ ନାହିଁ କ'ଣ କହିବେ ।

ରାଜେନ୍ଦ୍ର  ତୁମେ ଏଥର ଯାଇପାର । ମୋ ଚେତା ଅନେକ ବେଳୁ ଫେରିଲାଣି ।

ଅନୁପମା  ତମର ଚେତା ଫେରିଲାଣି ଅଥଚ ତମେ ମିଛରେ ଅଚେତ ମଣିଷ ପରି ପଡ଼ିଚ ? କ'ଣ ଯେ ତୁମକୁ କହିବି ? ଆମେ ଏତେ ଲୋକ ଅନେଇଚୁ ତମ ଚେତା କେତେବେଳେ ଫେରିବ ।

ରାଜେନ୍ଦ୍ର  ମୋ ପାଇଁ ଚେତା ଅପେକ୍ଷା ଅଚେତ ଅବସ୍ଥା ଭଲ । ଆଖି ଖୋଲିବା ଅପେକ୍ଷା ବନ୍ଦ କଲେ ମୋତେ ଭଲ ଲାଗୁଛି ।

ପ୍ରଶାନ୍ତ  ବାପାଙ୍କ କଥା ଏବେ ମୋଟେ ବୁଝି ହେଉ ନାହିଁ ।
ରାଜେନ୍ଦ୍ର  ମୋ କଥା ବୁଝି ନପାରିବା ଭଲ । ବୁଝି ପାରିଲେ ତୁମେ ସବୁ ଆଘାତ ପାଇବ ।
ସୁଶାନ୍ତ :  ବାପା ! ତୁମେ ଏସବୁ କ'ଣ କହୁଛ ?
ରାଜେନ୍ଦ୍ର  ମୁଁ ଆଖି ଖୋଲିଲେ ତୁମ ମୁହଁ ଆଉ ଆଖି ମୋର ଅସହ୍ୟ ହେଉଛି ।
ସୁଶାନ୍ତ  ଅସହ୍ୟ ?
ରାଜେନ୍ଦ୍ର :  ହଁ, ହଁ ଅସହ୍ୟ । ତୁମେ ମୋର ରକ୍ତ ସମ୍ପର୍କମାନେ ମୋ ରୁମ୍‌ରେ ପାଦ ଦେବା ମାତ୍ରେ ତୁମ ମୁହଁର ରଙ୍ଗ ବଦଳି ଯାଉଛି । ଆଖିର ମୁଦ୍ରା ବଦଳି ଯାଉଛି । ମୁଁ ତୁମ ମୁହଁ ଆଉ ଆଖିରୁ ପଢ଼ି ପାରୁଛି କୁଢ଼ କୁଢ଼ ଘୃଣା, କୁଣ୍ଠା ଆଉ ଆଶଙ୍କା ।
ଅନୁପାମ  ତୁମେ ଏସବୁ ବନ୍ଦ କର କହୁଛି । ତୁମେ କାହାରିକୁ କିଛି କରାଇ ଦେବ ନାହିଁ । ତୁମେ କାହିଁକି ସମସ୍ତଙ୍କୁ ଆଘାତ ଦେଉଛ ? ତୁମେ କାହିଁକି ସମସ୍ତଙ୍କୁ ସନ୍ଦେହ କରୁଛ ?
ରାଜେନ୍ଦ୍ର  ଅନୁପମା ! ତମେ ଆହୁରି ପ୍ରମାଣ ଚାହୁଛ ? ଆଚ୍ଛା ତମେ ଜାଣିଛ ଆଜି ଅପରେସନ୍‌ରେ ମୋ ଦେହର କେଉଁ ଅଙ୍ଗଟା କାଟି ଫିଙ୍ଗି ଦିଆଯାଇଛି ?
ଅନୁପମା  ତୁମର ଅଙ୍ଗ କାଟି ଫିଙ୍ଗି ଦିଆଯାଇଛି ?
ରାଜେନ୍ଦ୍ର  ମୋ ବାଆଁ ଗୋଡ ପାଖରୁ ଚାଦରଟା କାଢ଼ ଦେଖ ।
ଅନୁପମା  (ଚାଦର ଉପରେ ହାତ ବୁଲାଇଲେ) କାହିଁ ? କ'ଣଟା କାଟି ଦିଆ ଯାଇଛି ?
ରାଜନ୍ଦ୍ର  ଦେଖ, ଭଲ ଭାବରେ ହାତମାରି ଦେଖ, ମୋ ବାଆଁ ଗୋଡଟା ଜଙ୍ଘ ମୂଳରୁ କାଟି ଦିଆଯାଇଛି ।
ଅନୁପମା  ଏ ତୁ କ'ଣ କଲୁ ସୁଶାନ୍ତ ? (କାନ୍ଦି ପକାଇଲେ)
ସୁଶାନ୍ତ  ବାପାଙ୍କର ସେ ଗୋଡଟା ପୂରାପୂରି ସେପ୍‌ଟିକ୍ ହୋଇ ଯାଇଥିଲା । ଆଉ କିଛି ଉପାୟ ନଥିଲା ବୋଉ ।
ରାଜେନ୍ଦ୍ର  ମୋର ଗୋଟେ ଗୋଡ କାଟି ଫିଙ୍ଗି ଦେଲୁ ମୋତେ ଟିକେ ପଚାରିଲୁ ନାହିଁ ।
ସୁଶାନ୍ତ  ସେ ଗୋଡଟା ଅନେକ ଦିନରୁ କାଟି ଦେବାର ଥିଲା । ଟାଟା ମେମୋରିଆଲ୍‌ରେ ପ୍ରଥମେ ଯେତେବେଳେ ଅପରେସନ୍

ହେଲା ସେତେବେଳେ ଡାକ୍ତର କାଟି ଦେବାକୁ ଚାହୁଁଥିଲେ । କିନ୍ତୁ ବୋଉର ଆପତ୍ତି ଯୋଗୁ କଟାଯାଇ ନଥିଲା ।

ଅନୁପମା ସେତେବେଳେ କଟା ଯାଇନଥିଲା, ଏଇଲେ ପୁଣି କାହିଁକି କାଟିଲୁ ?

ରାଜେନ୍ଦ୍ର ଗୋଡଟା କାଟି ଦେଲେ ମୁଁ କ'ଣ ଭଲ ହୋଇଯିବି ? କ୍ୟାନସର ରୋଗ କ'ଣ ଗୋଡଟେ ନେଇ ସନ୍ତୁଷ୍ଟ ହେବ ? ତାର ଦରକାର ମୁଣ୍ଡ । ମୁଣ୍ଡ ନନେଇ ସିଏ ଛାଡିବ ନାହିଁ ।

ସୁଶାନ୍ତ ମୁଁ ସେ କଥା ଜାଣେ ବାପା! କିନ୍ତୁ ସେ ଗୋଡ଼ଟା ପୂରା ପୂରି ସେପଟିକ୍ ହୋଇ ଯାଇଥିଲା । ସେଇ ଗୋଡ଼ ଯୋଗୁ ତମକୁ ବେଶୀ ଯନ୍ତ୍ରଣା ହୋଉଥିଲା । କି କାମରେ ଲାଗିଥାନ୍ତି ସେ ଗୋଡ଼ଟା ?

ରାଜେନ୍ଦ୍ର କହି ପାରିବୁ ଏ ଶରୀରଟା ମୋର ଆଉ କି କାମରେ ଆସିବ ? କେବଳ ମୋତେ କଷ୍ଟ ଦେବା ପାଇଁ ମୋର ଏ ଶରୀରଟା ପଡ଼ି ରହିଛି । କାଟି ଫିଙ୍ଗି ଦେଇ ପାରିବୁ ମୋର ଏ ଅଥର୍ବ, ରୋଗାକ୍ରାନ୍ତ ଶରୀରଟାକୁ ? ପାରିବୁ ?

ସୁଶାନ୍ତ ବାପା !

ରାଜେନ୍ଦ୍ର ଯାହା କଲେ ମୋତେ ଶାନ୍ତି ମିଳିବ ସେ କାମ କରିବାକୁ ଘୋର ଅନିଚ୍ଛା । ଆଉ ଯାହା କଲେ ମୋ ଦେହର ଆଉ ମନର ଯନ୍ତ୍ରଣା ଅଧିକ ବଢ଼ିବ ତୁ ସେଇଆ କରିଚାଲିଛୁ ।

ସୁଶାନ୍ତ ମୁଁ ଜଣେ ଡ଼ାକ୍ତର । କଣ କଲେ ରୋଗୀର ମଙ୍ଗଳ ହେବ ସେ କଥା ମୋତେ ଭଲଭାବରେ ଜଣା । ଅପରେସନ୍ ବେଳେ ମୁଁନିଜେ ଉପସ୍ଥିତ ଥିଲି । ଏ ବିଷୟରେ ଡ଼ାକ୍ତର ମାଥୁରଙ୍କ ସହିତ ମୁଁ ପରାମର୍ଶ କରିଛି ।

ରାଜେନ୍ଦ୍ର ମୋ ପରି ଜଣେ ରୋଗୀ ଯିଏ ଆଉ ଆରୋଗ୍ୟ ହେବାର ସାମାନ୍ୟ ସମ୍ଭାବନା ନାହିଁ ତା ପାଇଁ ଡ଼ାକ୍ତରି ପରାମର୍ଶର କି ମୂଲ୍ୟ ଅଛି ? ହଉ ଠିକ୍ ଅଛି, ତୁମେ ସବୁ ଏଥର ଯାଅ ।

ପ୍ରଶାନ୍ତ ସାଲାଇନ୍ ଟା ଲାଗିଛି, ଆମ ଭିତରୁ କେହି ଜଣେ ରହୁ ।

ଅନୁପମା : ମୁ ଅଛି, ତୁମେ ସବୁ ଯା ।

ରାଜେନ୍ଦ୍ର : ତୁମେ ବି ରହିବା ଆବଶ୍ୟକ ନାହିଁ । ମକରା ଅଛି, ତୁମେ ଅଯଥାରେ କାହିଁକି ରହିବ ?

ଆନଂଦ ଚଂଦ୍ର ପହି

ଅନୁପମା ମୁଁ ରହିବା ଆଉ ମକରା ରହିବା ଭିତରେ କଣ କିଛି ଫରକ ଦେଖୁନା ?

ରାଜେନ୍ଦ୍ର ଦେଖୁଛି । ତୁମ ମୁହଁରେ ସବୁବେଳେ ଘୃଣା ଆଉ ଅନିଚ୍ଛା ଭାବ ଯାହା ମକରାଠି ନାହିଁ ।

ଅନୁପମା : ଯେତେ ଯିଏ ଯାହା କଲେ ତୁମ ମନକୁ ଯାଉ ନାହିଁ । ଗୋଟେ ପୁଅ ମାସେ ହେଲା ଏଠି ତୁମ ଚିକିତ୍ସାରେ ଲାଗିଛି ତାକୁ ଯାହାଇଚ୍ଛା ବକୁଛ । ଏଥିରେ ତୁମ ସେବା କରିବାକୁ କାହାର କେମିତି ଆଗ୍ରହ ହେବ ?

ରାଜେନ୍ଦ୍ର ହଁ ପୁଅତ ଯାହା କଲା ନିଜ ଆଖିରେ ଦେଖିଲି । ମୋର ଗୋଟେ ଗୋଡ଼ କାଟି ଅପଙ୍ଗ କରିଦେଲା ।

ଅନୁପମା ତୁମେ ପ୍ରକୃତିଛଡ଼ା ହେଲଣି । ନହେଲେ ସମସ୍ତଙ୍କ ମୁହଁ ଉପରେ ଏମିତି ମାଡ଼ ମାରିବା ପରି କଥା କୁହନ୍ତ ନାହିଁ ।

ରାଜେନ୍ଦ୍ର ମୁଁ ଚାହେଁ ତୁମେ ସବୁ ମୋ ଆଖି ଆଗକୁ କେହି ନଆସ । ଚାକର ଦ୍ୱାରା ମୋ ଅବଶିଷ୍ଟ ଦିନ କାମ ମୁଁ କରାଇ ନେବି ।

ଅନୁପମା ହଉ ଠିକ୍ ଅଛି ।

ରାଜେନ୍ଦ୍ର ଚାକର ଯେ ଆଗ୍ରହର ସହିତ ମୋ ସେବାକରୁଛି ତା ନୁହେଁ । ସିଏ ଅନିଚ୍ଛା ପ୍ରକାଶ କଲାବେଳେ ତାର ଆଗ୍ରହ ବଢ଼ାଇବା ପାଇଁ ମୁଁ କିଛି କିଛି ଟଙ୍କା ଧରାଇ ଦେଉଛି । କିନ୍ତୁ ତୁମକୁ ମୋର ସମସ୍ତ ସଂପତ୍ତି ଦେଇ ଦେଲା ପରେ ବି ମୋ ସେବା କରିବାକୁ ତୁମ କାହାରି ଠାରେ ଟିକେ ହେଲେ ଆଗ୍ରହ ଥିବାର ମୁଁ ଦେଖୁ ନାହିଁ ।

ଅନୁପମା ତୁମକୁ ମୁଁ ହାତଯୋଡ଼ି ଅନୁନୟ କରୁଛି, ତୁମେ ଏମିତି ମନଭଙ୍ଗା କଥା କୁହନା, ସେମାନଙ୍କ ମନରେ ଆଘାତ ଆସିବ ।

ରାଜେନ୍ଦ୍ର ତୁମେ ସବୁ ଆଘାତ ପାଇବା ପୂର୍ବରୁ ମୋ ଆଖି ଆଗରୁ ଚାଲିଯା । ମତେ ଟିକେ ଏକୁଟିଆ ରହିବାକୁ ଦିଅ ।

ଅନୁପମା ତୁମେ ଯଦି ସେଥିରେ ଖୁସି, ଆମେ ଚାଲି ଯାଉଛୁ ।

ରାଜେନ୍ଦ୍ର ହଁ, ତୁମେ ସବୁ ଚାଲିଯା ।

(ଧୀରେ ଧୀରେ ଅନୁପମା, ସୁଶାନ୍ତ ଓ ପ୍ରଶାନ୍ତ ସେ ଘରୁ ଚାଲିଗଲେ ।)



ଆନଂଦ ଚଂଦ୍ର ପହି

# ଷଷ୍ଠ ଦୃଶ୍ୟ

(ରାଜେନ୍ଦ୍ର ହୁଇଲ ଚେୟାର ଉପରେ ବସି ଝରକା ଫାଙ୍କରେ ରାସ୍ତାକୁ ଚାହିଁଥିଲେ ।)

ରାଜେନ୍ଦ୍ର ମକରା ! ମକରା !

ମକରା ଆଜ୍ଞା !

ରାଜେନ୍ଦ୍ର ଦେଖିଲୁ ଦେଖିଲୁ ।

ମକରା କ'ଣ ଆଜ୍ଞା ?

ରାଜେନ୍ଦ୍ର ରାସ୍ତାରେ କାହାର ଗୋଟେ ଶବ ଶୋଭାଯାତ୍ରା ଯାଉଥିବା ପରି ଦେଖା ଯାଉଛି । ଆଗରେ ଗୋଟେ ଖୋଲା ଜିପ୍‌ରେ ଶବ ଥୁଆ ହୋଇଛି । ତା ଉପରେ ଧଳା ଚାଦର ଘୋଡା ଯାଇଛି ଆଉ ଫୁଲ ଥୁଆ ହେଇଚି । କ'ଣ ଦେଖିଲୁଟି ?

ମକରା ହଁ ।

ରାଜେନ୍ଦ୍ର ଗାଡି ପଛେ ପଛେ କିଏ ସବୁ ଯାଉଛନ୍ତି ଏତେ ଉପରୁ ଚିହ୍ନ ହେଉ ନାହିଁ । କେଉଁ ଭାଗ୍ୟବାନ ଏ ଦହଗଞ୍ଜ କାଦୁଅରୁ ମୁକୁଳିଲା ? ରାମଲାଲ ନା ଶ୍ୟାମ ପ୍ରସାଦ ? କିଏ ଚାଲିଗଲା ? ଅବିନାଶ ପ୍ରହରାଜ ତ ଅନେକ ଦିନ ହେଲା ବେରାମ ଥିଲେ ।

ମକରା ନା, ସେମାନେ କେହି ନୁହଁନ୍ତି ?

ରାଜେନ୍ଦ୍ର ତୁ କ'ଣ ଦେଖିଚୁ ସେ ଶବଟାକୁ ?

ମକରା ଦେଖିଚି ।

ରାଜେନ୍ଦ୍ର କାହା ଶବ ?

ମକରା (ନୀରବ )

ରାଜେନ୍ଦ୍ର (ରାଗିଯାଇ) ତୋର ଆଜି ଏକି ଅପୂର୍ବ ଢ଼ଙ୍ଗ ବାହାରୁଛି, ମୁଁ କିଛି ବୁଝିପାରୁ ନାହିଁ ।

ମକରା କ'ଣ କହିବି ମୁଁ ବି କିଛି ଠିକ୍ କରି ପାରୁ ନାହିଁ ।

ରାଜେନ୍ଦ୍ର ମୁଁ ପଚାରୁଛି ସେଟା କାହା ଶବ । ତୁ ଯଦି ଶବ ଦେଖିଥିବୁ ଆଉ ଚିହ୍ନିଥିବୁ କହିବୁ । ଆଉ ଯଦି ଚିହ୍ନି ନଥିବୁ ନାହିଁ କରିବୁ ।

ଏଥିରେ ଠିକ୍ କରିବାର କ'ଣ ଅଛି ?

ମକରା : କିଛି ନାହିଁ ।

ରାଜେନ୍ଦ୍ର : କିଛି ନାହିଁତ ଯାହା ଜାଣିଛୁ କହୁ ନଉଁ କାହିଁକି ?

ମକରା (ନୀରବ)

ରାଜେନ୍ଦ୍ର (ଚିତ୍କାର କରି) ସବୁ ସଇତାନ ଏଠି ଏକାଠି ହେଇଚନ୍ତି । ମକରା !

ମକରା : ଆଜ୍ଞା !

ରାଜେନ୍ଦ୍ର : ସେଟା କାହା ଶବ ?

ମକରା : ଏଇ.... ଏଇ....

ରାଜେନ୍ଦ୍ର ହଁ, କହ....

ମକରା ଆପଣଙ୍କର ।

ରାଜେନ୍ଦ୍ର (ରାଗରେ ଗର୍ଜନ କରି) ମକରା !

ମକରା (ନୀରବ)

ରାଜେନ୍ଦ୍ର କ'ଣ କହିଲୁ, ସେଟା ମୋ ଶବ ?

ମକରା ହଁ ଆଜ୍ଞା ।

ରାଜେନ୍ଦ୍ର ତା ହେଲେ ଏଠି ଏ ହୁଇଲ ଚେୟାର ଉପରେ କିଏ ? ମୁଁ ନା ମୋର ପ୍ରେତାତ୍ମା ?

ମକରା ଆପଣ ।

ରାଜେନ୍ଦ୍ର ସେ ଖୋଲା ଜିପ୍‌ରେ ମୋ ଶବ ଶୋଇଚି ?

ମକରା ଆଜ୍ଞା !

ରାଜେନ୍ଦ୍ର ଏ ହୁଇଲ୍ ଚେୟାର ଉପରେ ମୁଁ ବସିଛି ?

ମକରା ଆଜ୍ଞା !

ରାଜେନ୍ଦ୍ର ମକରା ! (ଚିତ୍କାର କଲେ)
ତୋ ମୁଣ୍ଡ ଖରାପ ହେଇ ଗଲାଣି କି ?

ମକରା ମୋ ମୁଣ୍ଡ ଠିକ୍ ଅଛି । ମୁଁ ଯାହା ଦେଖିଲି, ଯାହା ବୁଝିଲି ସେଇଆ କହିଲି । ଆପଣ ରାଗିବେ ବୋଲି କହୁ ନଥିଲି ।

ରାଜେନ୍ଦ୍ର ରାଗିବି ବୋଲି କ'ଣ କହୁ ନଥିଲୁ ?

ମକରା କାର ପଛେ ପଛେ ସୁଶାନ୍ତବାବୁ ଆଉ ପ୍ରଶାନ୍ତବାବୁ ଯାଉଛନ୍ତି । ତାଙ୍କ ପଛକୁ ବାବୁଆଣୀ ଆଉ ବୋହୂମାଆମାନେ ଚାଲିଛନ୍ତି ।

ରାଜେନ୍ଦ୍ର ସେମାନେ କ'ଣ ଆଉ କାହା ଶବ ଶୋଭାଯାତ୍ରାରେ ଯିବାକୁ

ମନା ? ସେମାନେ ଯାଉଛନ୍ତି ବୋଲି ତୁ ବୁଝିଲୁ ଏଇଟା ମୋ ଶବ ବୋଲି ? ସତରେ ତୋର ମୁଣ୍ଡ ଖରାପ ହେଇ ଗଲାଣି । ମୁଁ ବଞ୍ଚିଛି, ତୁ ମୋ ସାଙ୍ଗରେ କଥାବାର୍ତ୍ତା କରୁଛୁ, ତଥାପି କହୁଛୁ ମୋ ଶବ ଶୋଭାଯାତ୍ରା ଚାଲିଛି ।

ମକରା ମୋ ମୁଣ୍ଡ ଏକଦମ୍ ଠିକ୍ ଅଛି ।

ରାଜେନ୍ଦ୍ର ଆଉ ତୋର ଏ ପାଟି ଏମିତି ଅସମ୍ଭବ, ଅଦ୍ଭୁତ କଥା କହୁଛି କେମିତି ?

ମକରା କାଲି ଅପରେସନ୍‌ରେ ଆପଣଙ୍କର ଗୋଟେ ଗୋଡ କଟାଗଲା ।

ରାଜେନ୍ଦ୍ର କଟା ଗଲାତ ସେଥୁ କ'ଣ ହେଲା ?

ମକରା ସେଇ ଗୋଡଟା ।

ରାଜେନ୍ଦ୍ର କ'ଣ ସେଇ ଗୋଡଟା ?

ମକରା ସେଇ ଗୋଡଟା ସେ ଜିପ୍ ଭିତରେ ଶବ ହୋଇ ଶୋଇଛି ।

ରାଜେନ୍ଦ୍ର (ଚିତ୍କାର କଲେ) ମକରା !

ମକରା ଗୋଡ଼ଟା ଜଙ୍ଘ ପାଖରୁ କଟା ଯାଇଥିଲା । ଏତେ ବଡ ଗୋଡଟା ଏଠି, ସେଠି ଫୋପାଡି ଦେବାଟା କ'ଣ ଠିକ୍ ହେବ ? କାଉ, କୁକୁର ସେ କଟା ଗୋଡଟାକୁ ଟାଣି ଟାଣି କରି ଖାଇଲେ ଆପଣଙ୍କର ଅପମାନ ହେବ ନାହିଁ ?

ରାଜେନ୍ଦ୍ର ତା ବୋଲି ଏମିତି ଶୋଭାଯାତ୍ରାରେ ନେଇ ତାକୁ ଦାହ କରାଯିବ ? ମୁଁ ବଞ୍ଚି ଥାଉଁ ଥାଉଁ ମୋ ଆଗରେ ମୋ ଶବ ଦାହ ? ମକରା !

ମକରା ଆଜ୍ଞା !

ରାଜେନ୍ଦ୍ର ତୁ ଯା, ସୁଶାନ୍ତ ଆଉ ପ୍ରଶାନ୍ତଙ୍କୁ ମୋ ପାଖକୁ ଡାକି ଆଣ । ମୁଁ ସେମାନଙ୍କୁ ପଚାରେ - ମୋର ଗୋଡକାଟି ମୋତେ ପଙ୍ଗୁ କରି ଦେଲେ ମୋତେ ପଚାରିଲେ ନାହିଁ । ପୁଣି ମୁଁ ବଞ୍ଚି ଥାଉଁ ଥାଉଁ ମୋର ଶବ ଶୋଭାଯାତ୍ରା । No, Never. It is too much. ମକରା ! (ଚିତ୍କାର କଲେ) । ଯା ସେମାନଙ୍କୁ ମୋ ପାଖକୁ ଡାକ ।

(ମକରାର ପ୍ରସ୍ଥାନ । ରାଜେନ୍ଦ୍ର ହୁଇଲ ଚେୟାରରେ ମୁଣ୍ଡ ଦେଇ ଆଖି ବୁଜି ପଡି ରହିଲେ ।)



ଆନନ୍ଦ ଚନ୍ଦ୍ର ପହି

# ଶେଷ ଦୃଶ୍ୟ

(ରାତ୍ରିର ବିଳମ୍ବିତ ପ୍ରହର । ବେଡ ଉପର ଉଠି ବସିଛନ୍ତି ରାଜେନ୍ଦ୍ର । ଆଖିରେ ଆଉ ନିଦ ନାହିଁ ।)

ରାଜେନ୍ଦ୍ର : ମକରା ! ମକରା !

ମକରା ଆଜ୍ଞା !

ରାଜେନ୍ଦ୍ର ଏ ଯାଏ କେହି ଆସିଲେ ନାହିଁ ?

ମକରା ନା ।

ରାଜେନ୍ଦ୍ର ତୁ ସେମାନଙ୍କୁ ଡାକିଥିଲୁ ?

ମକରା ଆପଣ ଆଉ ସେ କଥା ନେଇ କାହିଁକି ମୁଣ୍ଡ ଖେଳଉଛନ୍ତି ବାବୁ ? ନିଅନ୍ତୁ ଏଇ ନିଦ ବଟିକାଟା ଖାଇ କିଛି ସମୟ ଶୋଇ ପଡନ୍ତୁ । ରାତି ଅନେକ ହେଲାଣି । /

ରାଜେନ୍ଦ୍ର ରାତି କେତେ ହେଲାଣି ?

ମକରା (କାନ୍ଥ ଘଣ୍ଟାକୁ ଦେଖି) ଏଗାରଟା ।

ରାଜେନ୍ଦ୍ର ମତେ ଆଜି ମୋଟେ ନିଦ ନାହିଁ । ମୋ ଆଖି ଆଗରେ ମୋ ଶବ ଶୋଭାଯାତ୍ରା ଆଉ ଶବଦାହ । ଏସବୁ ମୋର ଯେଉଁ ଆଖି ଦେଖିଛି ସିଏ କେମିତି ଶୋଇବ ?

ମକରା ଆପଣ ଟିକେ ଥିର ମନରେ ହେଜନ୍ତୁ ଆଜ୍ଞା । ଆପଣଙ୍କର ଏତେ ବଡ ଗୋଡଟେ କଟାଗଲା । ସେଟାକୁ କ'ଣ ପଡିଆରେ ଫିଙ୍ଗି ଦିଆଯାଇଥାନ୍ତା ନା କାଉ, କୁକୁରଙ୍କୁ ବାଣ୍ଟି ଦିଆଯାଇ ଥାଆନ୍ତା ?

ରାଜେନ୍ଦ୍ର ତା ବୋଲି ଚନ୍ଦନ କାଠ ଆଉ ଘିଅରେ ସେ ଗୋଡଟାକୁ ପୋଡାଯିବ ?

ମକରା ଏଥିରେ ଆପଣଙ୍କ ମାନ୍ ଥାନ୍ ବଢ଼ିଲା ନା କମିଲା ?

ରାଜେନ୍ଦ୍ର ଆଜି ମୋର କଟା ପାଦଟାକୁ ମୋ ପରିବାରର ଲୋକମାନେ

ଯେତିକି ସମ୍ମାନ ଦେଖାଉଛନ୍ତି, ସେ ପାଦଟା ଯେତେବେଳେ ମୋର ଏ ଦେହରେ ଲାଗିଥିଲା ସେତେବେଳେ ତାକୁ ସେତିକି ଘୃଣା କରୁଥିଲେ ।

ମକରା ନାଇଁ ବାବୁ ! ସେମିତି କୁହନ୍ତୁ ନାହିଁ ।

ରାଜେନ୍ଦ୍ର ମୁଁ ଠିକ୍ କହୁଛି ମକରା ! ମୋ ଗୋଡକୁ ଦାହ କରିବା ନାଆଁରେ ସେମାନେ ଉତ୍ସବ ପାଳୁଛନ୍ତି । ମଉଜ କରୁଛନ୍ତି ଧନଗର୍ବ ଦେଖାଉଛନ୍ତି ।

ମକରା ସେମାନେ ଆପଣଙ୍କୁ ଖୁବ୍ ଭଲ ପାଆନ୍ତି, ଢେର ଖାତିର କରନ୍ତି । ଆପଣଙ୍କ ପାଇଁ ସମସ୍ତଙ୍କ ମନ ଦୁଃଖ । ହେଲେ, ଆପଣ ସେମାନଙ୍କୁ ଭୁଲ୍ ବୁଝୁଚନ୍ତି ।

ରାଜେନ୍ଦ୍ର ମୁଁ ସେମାନଙ୍କୁ ଭୁଲ୍ ବୁଝୁ ନାହିଁ ସେମାନେ ଭୁଲ୍‌ବାଟରେ ଚାଲିଛନ୍ତି । ଆଉ ଗୋଟେ କଥା ତୁ ଶୁଣିଛୁ ?

ମକରା ଆଉ କୋଉ କଥା ?

ରାଜେନ୍ଦ୍ର : ଆଜି କୁଆଡେ ଭୋଜି ଭାତର ଧୁମ୍ ଉଠୁଛି ।

ମକରା ଆପଣଙ୍କ ଗୋଡଟାକୁ ଯେଉଁମାନେ ଦାହ କରିବାକୁ ଯାଇଥିଲେ ସେମାନଙ୍କୁ କିଛି ଖାଇବାକୁ ନ ଦିଅନ୍ତେ କେମିତି ?

ରାଜେନ୍ଦ୍ର ସିଏତ ଅଲଗା କଥା । କିନ୍ତୁ ମୁଁ ଶୁଣିଲି ଆଜି ସଂଧ୍ୟାରେ ଗୋଟେ ଭୋଜି ହେଉଛି ।

ମକରା ନାଇଁ ବାବୁ ମିଛ କଥା ।

ରାଜେନ୍ଦ୍ର ଏ ଅସୁବିଧା କଥା କାହାକୁ ବୁଝେଇ ହୁଏନି ମକରା । ମୋ ଅବସ୍ଥାକୁ ଓହ୍ଲାଇ ଆସିଲେ ଯାଇଁ ତୁ ସେ ଅସୁବିଧା କଥା ବୁଝିପାରିବୁ ।

ମକରା ବାବୁ !

ରାଜେନ୍ଦ୍ର କିନ୍ତୁ ମୋ ଚିକିତ୍ସା କି ସେବା ଯତ୍ନରେ ମୋ ପରିବାର ଲୋକଙ୍କର ଆଗ୍ରହ ଥିବାର ମୁଁ ଦେଖୁନାହିଁ । ମୋର ମନେ ହୁଏ ସେମାନେ ଭାବୁଛନ୍ତି ଏ ବାବଦରେ ଥିବା କର୍ତ୍ତବ୍ୟ ସେମାନେ ସାରି ଦେଲେଣି । ଏଥର ତାଙ୍କର ପରବର୍ତ୍ତି କର୍ତ୍ତବ୍ୟ ମୋର ଅନ୍ତେଷ୍ଟିକ୍ରୀୟା ପାଳନ ।

ମକରା : ସେମିତି କୁହନ୍ତୁ ନେଇଁବାବୁ !

ଆନଂଦ ଚଂଦ୍ର ପତି

ରାଜେନ୍ଦ୍ର ହଁ ମକରା ! ମୁଁ ଯାହା କହିଲି ସେଇଟା ନିରାଟ ସତ ।
ମକରା ସବୁ କଥାକୁ ଆପଣ ନିଜ ଆଡକୁ ଟାଣୁଚନ୍ତି କାଇଁକି ? ସେମିତି ହେଲେ ଭାରି ଦୁଃଖ ପାଇବେ । ସେଇଥି ପାଇଁ ବୁଢ଼ା ହେଲେ...
ରାଜେନ୍ଦ୍ର ବୁଢ଼ା ହେଲେ କ'ଣ ହୁଏ ?
ମକରା ଛୋଟ ଛୋଟ କଥା କାନକୁ ଶୁଭେ ନାହିଁ । ସେମିତି ଅନେକ ଘଟଣା ତା ଚାରିପାଖରେ ଘଟିଯାଏ ଯାହା ଦେଖିଲେ ତା ମନକୁ କଷ୍ଟ ହେବ; କିନ୍ତୁ ସେ ଘଟଣା ସବୁ ତା ଆଖିକି ଦିଶେ ନାହିଁ ।
ରାଜେନ୍ଦ୍ର ମୁଁ କିନ୍ତୁ ଏଯାଏ ସେମିତି ନିପାରୁ ବୁଢ଼ା ହେଇନି । ମୋତେ ବର୍ତ୍ତମାନ ମୋଟେ ପଞ୍ଚାବନ ବର୍ଷ । ଦେଖିବା, ଶୁଣିବା ଯନ୍ତ୍ର ମୋର ଆଗଭଳି କାର୍ଯ୍ୟକ୍ଷମ ।
ମକରା ସେଇଥି ପାଇଁତ ଆପଣ କଷ୍ଟ ପାଉଛନ୍ତି ।
ରାଜେନ୍ଦ୍ର ମତେ ଟିକେ ସାହାଯ୍ୟ କରି ପାରିବୁ ମକରା ?
ମକରା ଆପଣଙ୍କୁ ସାହାଯ୍ୟ କରିବାତ ମୋର କାମ । କ'ଣ କରିବି କୁହନ୍ତୁ ।
ରାଜେନ୍ଦ୍ର ଆଗେ ମୋର କେଇଟା ପ୍ରଶ୍ନ ଉତ୍ତର ଦେ ।
ମକରା ମୁଁ ମୂର୍ଖ ଲୋକ । ମୁଁ କି ଉତ୍ତର ଦେବି ?
ରାଜେନ୍ଦ୍ର ମୋ ପ୍ରଶ୍ନ ଅତି ସରଳ ଆଉ ସହଜ ।
ମକରା ପଚାରନ୍ତୁ ।
ରାଜେନ୍ଦ୍ର ମୁଁ ଆଉ କଣ କେବେ ସୁସ୍ଥ ହେଇ ପାରିବି ?
ମକରା (ନୀରବ)
ରାଜେନ୍ଦ୍ର ଏତେ ସହଜ ପ୍ରଶ୍ନର ଉତ୍ତର କ'ଣ ତୋତେ ଜଣା ନାହିଁ ? ମୁଁ ଜାଣେ ମୁଁ ଆଘାତ ପାଇବି ବୋଲି ତୁ ଜାଣିଥିବା ପ୍ରଶ୍ନଟିର ଉତ୍ତର ନ ଦେଇ ଚୁପ୍ ରହୁଛୁ । ଇଏତ ମୋର ଶେଷ ଅବସ୍ଥା, ମୋର ଦୁଇ, ତିନିଥର ଅପରେସନ୍ ସରିଛି । ପୁଣି ଗୋଟେ ଗୋଡ କଟା ଯାଇଛି । ମୁଁ ମରିସାରିଛି, କେବଳ ବଞ୍ଚିବାର ଅଭିନୟ କରୁଛି ।
ମକରା ଇଏ କ'ଣ କହୁଚନ୍ତି ବାବୁ ? ଏ ସବୁ ଅଶୁଭ କଥାଗୁଡା ମୁହଁରେ ଧରନ୍ତୁ ନେଇଁ ।
ରାଜେନ୍ଦ୍ର ମୋର ଶବଦାହ ସରିଲାଣି ।

ଆନଂଦ ଚଂଦ୍ର ପହି

ମକରା ଆପଣଙ୍କର ନୁହଁ ଆପଣଙ୍କ ଗୋଡର ।
ରାଜେନ୍ଦ୍ର ଏଇଟା କ'ଣ କହିଲୁ ?
ମକରା ଚାବି କାଠି ।
ରାଜେନ୍ଦ୍ର କାହା ଚାବି କାଠି ?
ମକରା ଏଇ ଆଲ୍‌ମିରାର ।
ରାଜେନ୍ଦ୍ର ଏ ଚାବିକାଠିଟା ନେ ।
ମକରା ଚାବିକାଠି ମୁଁ କ'ଣ କରିବି ?
ରାଜେନ୍ଦ୍ର ନେ, ଧର । ମୁଁ ଯାହା କହୁଛି କର ।
ମକରା (ଚାବିକାଠି ନେଇ) କ'ଣ କରିବି ?
ରାଜେନ୍ଦ୍ର ଯା, ଆଲ୍‌ମିରାଟା ଖୋଲ୍ ।
ମକରା (ଡରି ଡରି ଆଲ୍‌ମିରା ପାଖକୁ ଗଲା)
ରାଜେନ୍ଦ୍ର ଆଲମିରା ଖୋଲ୍ । ହଁ, ଖୋଲ । ଆରେ ମୁଁ କହୁଛି ଖୋଲ୍ । (ମକରା ଆଲ୍‌ମିରା ଖୋଲିଲା)
ରାଜେନ୍ଦ୍ର ମଝି ଥାକରେ ଯେତେବିଡା ନୋଟ ଅଛି ସବୁ ଏଠିକି ନେଇ ଆସ ।
ମକରା ଏତେ ଟଙ୍କା ଆପଣ କ'ଣ କରିବେ ?
ରାଜେନ୍ଦ୍ର କେତେ ବିଡା ଟଙ୍କା ଅଛି ?
ମକରା ଅନେକ ବିଡା ।
ରାଜେନ୍ଦ୍ର ସବୁ ଟଙ୍କା ଏଇ ବେଡ ଉପରକୁ ନେଇଆ ।
ମକରା ଏତେ ଟଙ୍କା ?
ରାଜେନ୍ଦ୍ର ମୁଁ ତ କହିଲି ତୁ ଆଣିବୁ, ଏତେ ସେତେରୁ ତୁ କ'ଣ ପାଇବୁ ? ହଁ ନେଇଆ ।
ମକରା (ଟଙ୍କା ସବୁ ଦୁଇ ହାତରେ ନେଇ ଆସିଲା) କୋଉଠି ଥୋଇବି ?
ରାଜେନ୍ଦ୍ର ଏଇଠି, ଏଇ ବେଡ ଉପରେ ଥୋ ।
ମକରା ଏତେ ଟଙ୍କା କ'ଣ କରିବେ ବାବୁ ?
ରାଜେନ୍ଦ୍ର : ତୋ ଗାମୁଛା ଦେଖା ।
ମକରା (ଡରି ଗଲା) କାଇଁକି ?
ରାଜେନ୍ଦ୍ର ମନା କରନା ମକରା । ଅଣ୍ଟାରୁ ଗାମୁଛା ଖୋଲ ।

ମକରା  ଆପଣ ଇଏ କ'ଣ କହୁଛନ୍ତି ?
ରାଜେନ୍ଦ୍ର  ତୁ ଡରିବା କିଛି ଦରକାର ନାହିଁ । ଗାମୁଛା ଦେଖା ।
ମକରା  (ଗାମୁଛା ଦେଖାଇଲା) ବାବୁ ! ମୁଁ ଏସବୁ କ'ଣ କରିବି ?
ରାଜେନ୍ଦ୍ର : ତୁ ଆଗ ଧର । (ଟଙ୍କା ବିଡା ସବୁ ମକରା ଗାମୁଛାରେ ଦେଲେ) କାହାକୁ ଦେବୁ, କ'ଣ ହେବ ସେ କଥା ମୁଁ କହୁଛି ।
ମକରା  ଏସବୁ ନେଇ ମୁଁ କ'ଣ କରିବି ? ଏଇତ ଲକ୍ଷେ, ଦେଢ଼ ଲକ୍ଷ ଟଙ୍କା ହେବ ।
ରାଜେନ୍ଦ୍ର  ତୋର କେତୋଟି ଝିଅ ?
ମକରା : ତିନୋଟି ।
ରାଜେନ୍ଦ୍ର  ଭୁବନେଶ୍ୱରରେ ତୋର ନିଜର ଘର ଅଛି ?
ମକରା  ନା ।
ରାଜେନ୍ଦ୍ର  ଏ ଟଙ୍କାରେ ତୁ ତୋ ଝିଅ ବାହାଘର କରିବୁ । ଆଉ ଏ ଦଶବିଡା ନେ ଭୁବନେଶ୍ୱରରେ ଖଣ୍ଡେ ଜାଗା କିଣିବୁ ।
ମକରା  ତମେ ଏସବୁ କ'ଣ କହୁଚ ବାବୁ ?
ରାଜେନ୍ଦ୍ର  ମୋ ଅନୁରୋଧ ରକ୍ଷାକର ମକରା !
ମକରା  ବାବୁ !
ରାଜେନ୍ଦ୍ର  ତୁ ଟଙ୍କା ରଖ ମକରା, ଏଟଙ୍କା ତୋର ବହୁତ କାମରେ ଆସିବ ।
ମକରା  ମୁଁ କାହିଁକି ନେବି ? ଏଟଙ୍କା ଆପଣଙ୍କ ପୁଅ, ସ୍ତ୍ରୀ କି ବୋହୂଙ୍କୁ ଦିଅନ୍ତୁ ।
ରାଜେନ୍ଦ୍ର  ସେମାନଙ୍କୁ ମୁଁ ଅନେକ ଦେଇଛି । ଦୁଇ, ଦୁଇଟା ଇଣ୍ଡଷ୍ଟ୍ରି, କୋଠାବାଡି, ଭୁବନେଶ୍ୱରରେ ପାଞ୍ଚଟା ପ୍ଲଟ, ଗାଡି ମଟର, ଗାଆଁରେ ବାଟିବାଟି ଜମି, ଆମ୍ବତୋଟା, ନଡିଆ ବଗିଚା, ମୋଟା ଅଙ୍କର ବ୍ୟାଙ୍କ ବାଲାନ୍ସ । ଧନ ସମ୍ପତ୍ତିର ଶୋଷ ସେମାନଙ୍କର ନାହିଁ ।
ମକରା  ମୁଁ କାହିଁକି ନେବି ? ଆପଣ ଆଉ କାହାକୁ ଦିଅନ୍ତୁ ।
ରାଜେନ୍ଦ୍ର  ମୁଁ ତୋତେ ଏ ଟଙ୍କା ମୋଫତ୍‌ରେ ଦେଉ ନାହିଁ । ଯା ବଦଳରେ ମୋତେ ଗୋଟେ ଜିନିଷ ଦେବାକୁ ହେବ ।
ମକରା  କି ଜିନିଷ ?

ରାଜେନ୍ଦ୍ର ସେମିତି କିଛି ମୂଲ୍ୟବାନ କି ଦୁଷ୍ପ୍ରାପ୍ୟ ଜିନିଷ ନହଁ । ତୁ ଚାହିଲେ ଦେଇ ପାରିବୁ ।

ମକରା ଗୋଟେ ଇଞ୍ଜେକସନ୍ ।

ମକରା ନର୍ସକୁ ଡାକି ଦେଉଛି ସିଏ ଆସି ଇଞ୍ଜେକନ୍ ଦେବେ ।

ରାଜେନ୍ଦ୍ର ସେ ଇଞ୍ଜେକସନ୍ ମୋତେ ମାତ୍ର ଦୁଇ ଘଣ୍ଟାର ନିଦ ଦେଉଛି । ଏମିତି ଗୋଟେ ଇଞ୍ଜେକସନ୍ କିଣି ଆଣିବୁ ଯେମିତି ସିଏ ମୋତେ ଚିର ନିଦ୍ରା ଦେବ ।

ମକରା ଆପଣ ଏକ'ଣ କହୁଛନ୍ତି ବାବୁ ?

ରାଜେନ୍ଦ୍ର ଯଦି ସେ ଇଞ୍ଜେକସନ୍ ଆଣି ପାରିବୁ ନାହିଁ, ତାହେଲେ ଟିକିଏ ବିଷ କିଣି ଆଣି ମୋତେ ଦେବୁ ଯାହା ଖାଇଲେ ମୁଁ ଏ ଯନ୍ତ୍ରଣାରୁ ମୁକ୍ତି ପାଇଯିବି ।

ମକରା ବାବୁ !

ରାଜେନ୍ଦ୍ର ଏ ଆଲମିରାରେ ଯେତେଟଙ୍କା ଅଛି ସବୁ ନେ, କିନ୍ତୁ ମୋ ଉପରେ ଦୟା କର ।

ମକରା ମୁଁ ଆପଣଙ୍କ ନିମକ ଖାଇଚି ଆଜ୍ଞା । ମୁଁ ଆପଣଙ୍କୁ ମାରି ପାରିବି ନାହିଁ ।

ରାଜେନ୍ଦ୍ର ମତେ ମାରି ଦେଲେ ମୁଁ ବଞ୍ଚିଯିବି ମକରା । ଏଇଟା ଜୀବନ ନୁହଁ ଯନ୍ତ୍ରଣା । ଏମିତି ଜୀବନ ମୋର ଲୋଡ଼ା ନାହିଁ ।

ମକରା ମୁଁ ପାରିବି ନାହିଁ ବାବୁ ! ମୁଁ ପାରିବି ନାହିଁ । ଏ କଂସେଇ କାମ ମୋ ଦେଇ ହେବ ନାହିଁ । ଯୋଉ ହାତରେ ମୁଁ ଆପଣଙ୍କୁ ଖାଇବା ଜିନିଷ ଦେଇଚି, ଔଷଧ ଦେଇଚି, ସେଇ ହାତରେ ବିଷ କେମିତି ଦେବି ? ନା, ମୁଁ ପାରିବି ନେଇଁ । ନା, ମୋଟେ ନୁହଁ ।

ରାଜେନ୍ଦ୍ର ମୁଁ ତୋତେ ଆହୁରି ଟଙ୍କା ଦେବି, ତୋ ନାଆଁରେ ମୋ କଳକାରଖାନା, କୋଠାବାଡ଼ି ସବୁ ସମ୍ପତ୍ତି ଉଇଲ୍ କରିଦେବି । ମତେ ଟିକେ ବିଷ ଦେ ମୁଁ ବଞ୍ଚିଯାଏ ।

ମକରା ଆପଣଙ୍କ ମୁଣ୍ଡ ଠିକ୍ ନାହିଁ ।

ରାଜେନ୍ଦ୍ର ମୋତେ ଟିକେ ବୁଝିବାକୁ ଚେଷ୍ଟା କର ମକରା !

ମକରା ଆପଣଙ୍କ ମୁଣ୍ଡ ଖରାପ ହେଇଗଲାଣିବାବୁ, ମୁଁ ଯାଉଛି

ସୁଶାନ୍ତବାବୁଙ୍କୁ ଡାକି ଆଣିବି ।

ରାଜେନ୍ଦ୍ର  ସେମାନେ ସମସ୍ତେ ଭୋଜିଭାତରେ ମସଗୁଲ୍ ଥିବେ । ତୋ କଥା ସେମାନଙ୍କ କାନରେ ପଶିବ ନାହିଁ ।

ମକରା  ତଥାପି ସେମାନଙ୍କୁ ଜଣାଇବା ମୋର କାମ ।
(ଟଙ୍କା ତକ ସେଇଠି ସେମିତି ପକାଇ ଦେଇ ପଳାଇଲା)

ରାଜେନ୍ଦ୍ର  ମକରା ! ମକରା ! ତୁ ଯାଆନା ମକରା ! ଆରେ ମୋ କଥା ଟିକେ ଶୁଣ୍ । ନା, ମୋ କଥା କେହି ଶୁଣୁ ନାହାଁନ୍ତି, ତୁବା କାହିଁକି ଶୁଣିବୁ ? ଓଃ କି ଯନ୍ତ୍ରଣା । ଛାତି ଭିତରଟା ଜଳି ଯାଉଛି । ମକରା ! ମକରା ! ଆରେ ପେନ୍‌କିଲର ବଟିକା ଡବାଟା କୋଉଠି ରଖିଲୁ । (ଖଟ ସାରା, ତକିଆ ତଳ ଇତ୍ୟାଦି ସ୍ଥାନ ବ୍ୟସ୍ତ ହୋଇ ଖୋଜିଲେ) ନା, ପେନ୍‌କିଲର ଏଇଲେ ମିଳିବ ନାହିଁ । (ହଠାତ୍ ନିଦ ବଟିକା ଡବାଟା ହାତରେ ପଡି ଯାଇଛି ) ଏ ନିଦ ବଟିକା ଗୋଟେ ଖାଇଲେ ଘଣ୍ଟେ, ଦୁଇଘଣ୍ଟା ନିଦ ହୋଇଯିବ । ଓଃ କି କଷ୍ଟ । ଏ ସବୁଯାକ ନିଦ ବଟିକା ଏକାଥରକେ ଖାଇଦେଲେ ସବୁଦିନ ପାଇଁ ହୁଏତ ଶୋଇ ଯାଇ ହେବ । ଏଇଠି ମୁକ୍ତିର ବାଟ ମୋ ହାତ ମୁଠାରେ ଅଛି ମୁଁ ଏତେ ଲୋକଙ୍କୁ ମାଗୁଛି । (ନିଦ ବଟିକା ଯାକ ସେ ଡବାରୁ ଖୋଲି ଗଣିଲେ) ଏକ, ଦୁଇ, ତିନ୍, ଚାର୍, ପାଞ୍ଚ, ଛଅ, ସାତ । ଇଏତ ଅନେକ ଗୁଡେ ବଟିକା । ପ୍ରାୟ ତିରିଶ, ଚାଳିଶଟା ହେବ । କେହି ଆସିଯିବା ପୂର୍ବରୁ ଖାଇନେବା ଭଲ । (ସବୁଯାକ ବଟିକା ମୁଠାକରି ଏକ ସଙ୍ଗରେ ପାଟିକୁ ପକାଇ ଦେଇ ଟେବୁଲ୍ ଉପରୁ ପାଣି ଆଣି ଗ୍ଲାସ୍‌ଟେ ପିଇ ଦେଲେ ।)
ଏଥର ମୁଁ ଚିର ନିଦ୍ରାରେ ଶୋଇଯାଇ ପାରିବି ।
(ହାଇ ମାରିଲେ)
ଆଖି ମାଡି, ମାଡି ପଡୁଛି । ପାଟି ଅଠା, ଅଠା ହୋଇ ଯାଉଛି ।
ଓଃ ! କଣ୍ଠ ଶୁଖି ଶୁଖି ଯାଉଛି ।
(ଧୀରେ ବିଛଣାରେ ଶୋଇ ଯାଇଛନ୍ତି ରାଜେନ୍ଦ୍ର । କିଛି ସମୟ ପରେ ବ୍ୟତିବ୍ୟସ୍ତ ହୋଇ ଧାଇଁ ଆସିଛନ୍ତି ସୁଶାନ୍ତ, ପ୍ରଶାନ୍ତ, ଅନୁପମା ଓ ମକରା । ରାଜେନ୍ଦ୍ରଙ୍କୁ ଆସି ହଲା, ହଲି କରିଛନ୍ତି,

ତାଙ୍କର ଚେତା ନାହିଁ । ସୁଶାନ୍ତ ରାଜେନ୍ଦ୍ରଙ୍କୁ ପରୀକ୍ଷା କରିଛନ୍ତି ।)

ଅନୁପମା  କ'ଣ ଦେଖିଲୁ ସୁଶାନ୍ତ ?

ସୁଶାନ୍ତ  ବାପାଙ୍କର ସେନ୍ସ ନାହିଁ ।
(ନିଦ ବଟିକା ଡବାଟା ଖାଲି ପଡିଥିବା ଦେଖି) ଏଇ ନିଦ ବଟିକା ସବୁଯାକ ଏକାଥରକେ ଖାଇ ଦେଇଛନ୍ତି ।

ପ୍ରଶାନ୍ତ  ମୁଁ କାଲି ଏଇ ନିଦ ବଟିକା ଡବାଟା କିଣିକି ଦେଇଥିଲି । ଏଥିରେ ପୂରା ଡବେ ଥିଲା ।

ଅନୁପାମ :  ହେ ମାଆ ! ହେ ଭଗବାନ ! କ'ଣ କରାଯିବ ଏଇଲେ ?

ମକରା  ବାବୁଙ୍କର କ'ଣ ହେବ ? ସିଏ କ'ଣ ଆଉ ଭଲ ହେବେ ?

ସୁଶାନ୍ତ  ଏଇ ନିଦ ବଟିକାର ପ୍ରଭାବ ନ ସରିବା ପର୍ଯ୍ୟନ୍ତ ତାଙ୍କର ସେନ୍ସ ଆସିବ ନାହିଁ । ଧର ତାଙ୍କୁ ଶୀଘ୍ର ଡାକ୍ତରଖାନା ନେଇଯିବା ।

ପ୍ରଶାନ୍ତ  ବାପା କ'ଣ ଆଉ ଭଲ ହେବେ ?

ଅନୁପମା  କିରେ ସୁଶାନ୍ତ ! ତୁ କିଛି କହୁନୁ କାହିଁକି ?

ସୁଶାନ୍ତ  ଥରେ ପରା କହିଲି ଧର ତାଙ୍କୁ ଗାଡିକି ଉଠା ଡାକ୍ତରଖାନା ନେଇଯିବା । ଧର ପ୍ରଶାନ୍ତ, ଧର ମକରା ଧର ।
(ଅନୁପମା କାନ୍ଦୁଥିଲେ । ପ୍ରଶାନ୍ତ, ସୁଶାନ୍ତ ଓ ମକରା ରାଜେନ୍ଦ୍ରଙ୍କୁ ଟେକି ଟେକି ଗାଡିକୁ ନେଇଗଲେ ।)



# କାଲି ଆଜି କାଲି

## ନାଟକ ସମ୍ପର୍କରେ ସୂଚନା

| | | |
|---|---|---|
| ସେଟ୍ ସଂଖ୍ୟା | - | ଦୁଇ |
| ନାରୀ ଚରିତ୍ର ସଂଖ୍ୟା | - | ଏକ |
| ଅଭିନୟ ସମୟ | - | ଏକ ଘଣ୍ଟା |

*ଭୁବନେଶ୍ୱର ଦୂରଦର୍ଶନରେ ଶତାବ୍ଦୀର କଳାକାରଙ୍କ ଦ୍ୱାରା ୧୯୯୫ ମସିହାରେ ପ୍ରସାରିତ ନାଟକର ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ :-*

*ସୂଚନା ଭବନ, ଭୁବନେଶ୍ୱର ମଞ୍ଚରେ ୧୯୯୭ ମସିହାରେ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡର କର୍ମଚାରୀଙ୍କ ଦ୍ୱାରା ଅଭିନିତ ନାଟକର ବିଭିନ୍ନ ଚରିତ୍ରରେ :*

| | | |
|---|---|---|
| ବୃନ୍ଦାବନ ବାରିକ | - ମାଗୁଣି | - ଚିରଞ୍ଜିଂବୀ ମିଶ୍ର |
| ଦାମୋଦର ନାୟକ | - ଗଦେଇ | - ଶିଶିର କୁମାର ମହାନ୍ତି |
| ଅଶ୍ରୁମୋଚନ ମହାନ୍ତି | - ନିଧିଆ | - ଦେବଦତ୍ତ ପଟ୍ଟନାୟକ |
| ନରେନ୍ଦ୍ର ସେନାପତି | - ଗନ୍ଧିଆ | - ବିଜୟ କୁମାର ଘଡାଇ |
| କିଶୋର ଚନ୍ଦ୍ର ଦାଶ | - ମହନି | - ପଠାଣି ଜେନା |
| ସୁନାକର ଶତପଥୀ | - ଦୋଳିଆ | - ତ୍ରିଲୋଚନ ପତି |
| ସରୋଜ ମହାପାତ୍ର | - ସପନା | - ସୁବାଷ ଚନ୍ଦ୍ର ମିହିର |
| ସକଳେଶ୍ୱର ପଟ୍ଟନାୟକ | - ପୋଲିସ୍ ସବ୍ ଇନିସ୍‌ପେକ୍ଟର | - ବଟକୃଷ୍ଣ ପଣ୍ଡା |
| ମନମୋହନ ବାରିକ | - କନେଷ୍ଟବଲ | - ସୋମେଶ୍ୱର ହଂସ |
| ମଣିଦୀପା ମଲ୍ଲିକ | - କନକ | - ଅନୀତା ବିଶ୍ୱାସ |
| ଅଂଶୁମାନ ଭଟ୍ଟାଚାର୍ଯ୍ୟ | - ପଞ୍ଚୁଆ | - ଅଂଶୁମାନ ଭଟ୍ଟାଚାର୍ଯ୍ୟ |
| ଅଜିତ ଦାସ | - ନିର୍ଦ୍ଦେଶକ | - ଧୀର ମଲ୍ଲିକ |

# ପ୍ରଥମ ଦୃଶ୍ୟ

(ମାଗୁଣି ବିଶ୍ୱାଳର ଘର । ଗାଆଁ ଘର । ମାଟି କାନ୍ଥ, ଚାଳ ଛପର । ସମୟ ଅପରାହ୍ନ ଚାରିଟା । ମାଗୁଣି ପିଣ୍ଡାରେ ବସି ଦଉଡି ବଳୁଛି । ଏଇ ସମୟରେ ହାତରେ ବହି ବସ୍ତାନି ଧରି କାନ୍ଦି କାନ୍ଦି ପ୍ରବେଶ କଲା ମାଗୁଣିର ନାତି ପଞ୍ଚୁଆ ।)

ପଞ୍ଚୁଆ (କାନ୍ଦି କାନ୍ଦି) ଏଁ.... ଏଁ...... ଏଁ.....

ମାଗୁଣି ଆରେ ପଞ୍ଚୁଆ ! ଏମିତି ରଗଡି ହେଇ କାନ୍ଦୁଚୁ କାଇଁକି ? ତତେ କିଏ ମାଇଲା ?

ପଞ୍ଚୁଆ ଏଁ..... ଏଁ..... ଏଁ.... (ବେଶି ଜୋର୍‌ରେ କାନ୍ଦିଲା)

ମାଗୁଣି ମାଷ୍ଟର ମାରିଚି କିରେ ? କ'ଣ ଚଗଲା ହୋଇଥିବୁ ନହେଲେ ପଢ଼ାପଢ଼ି କରିନଥିବୁ । ମାରିବେ ନେଇଁ ଆଉ କ'ଣ ପୂଜିବେ ?

ପଞ୍ଚୁଆ (ସେମିତି କାନ୍ଦି କାନ୍ଦି) ସାଆରେ କାଇଁକି ମାରିବେ ?

ମାଗୁଣି ମୁଁ ପରା ଜାଣିଚି ସେ ଟିକମଟା ଭାରି ଚଗଲା । ତା ସାଙ୍ଗରେ ସାଙ୍ଗ ହବୁ ନେଇ ବୋଲି ତତେ ହଜାର ଥର ମନା କଲିଣି । ତୁ ମୋ କଥା ନମାନି ତା ସାଙ୍ଗରେ ସାଙ୍ଗ ହେଲୁ । ଦେଇଚି କଷିକି କୁଟି ।

ପଞ୍ଚୁଆ ଟିକମ ତା ମାମୁ ଘଟିକି ଯାଇଚି ।

ମାଗୁଣି ଆଉ ତାହେଲେ କିଏ ମାଇଲା ?

ପଞ୍ଚୁଆ ଗୋଟେ କୋଇଲା ଶଗଡିଆ ମୋ ଠେଇଁ ସାଇକଲ ବଜେଇ ଦେଲା । ଦେଖୁନ ଜେଜେ ମୋ ଆଣ୍ଠୁରୁ କେମିତି ରକତ ବହୁଚି ।

ମାଗୁଣି : ଦେଖ୍, ଦେଖ୍ । ଆରେ ସତେତ । ଏତେହୋନ୍ତେ ଖଣ୍ଡିଆ ହେଇଚି କହୁନୁ କେମିତି ? କେତେ ନାଇଁ କେତେ ରକତ ଯାଇଥିବ । କିଏ ଏମିତି ଅନ୍ଧମିନ୍ତି ସାଇକଲ ଚଲଉଥିଲା ? (ପଞ୍ଚୁଆ ଆଣ୍ଠୁରୁ ରକ୍ତ ପୋଛିଲେ)

ଆନଂଦ ଚଂଦ୍ର ପହି

ପଞ୍ଚୁଆ ଏଇ ସାମୁଲ ସାଇର ସତୁରା । ସିଏ ବଡ ବଡ କୋଇଲା ଦି'ବସ୍ତା ସାଇକଲରେ ନଦିକି ଆଉଥିଲା । ତା ପଛରେ ପୁଲିସି ଗୋଡେଇ ଥିଲା । ମୁଁ ଇସିକୋଲରୁ ଛୁଟି ହେଇ ଘଟିକି ଆଉଥିଲି । ତା ସାଇକେଲ ପେଡଲ ମୋ ଆଣ୍ଠୁରେ ବାଜିଲା । ମୁଁ ତଳେ ପଡିଗଲି । ମୋ ଆଣ୍ଠୁ ଛିଡିଗଲା ।

ମାଗୁଣି ଚୋରା, କାଠ, କୋଇଲା ବୋହିକି ଏଗୁରା ଭାରି ତିହାଳିଆ, ଡିମାକିଆ ହେଇଗଲେଣି । ଇନ୍ଦର ଚନ୍ଦର ମାନୁ ନାହାଁନ୍ତି । ହେଇ ତୋ ବାପା ଆଇଲାଣି ତାକୁ କହ ସିଏ ଯାଇ ସତୁରାକୁ ପଚାରୁ ।

ନିଧିଆ (ପ୍ରବେଶି) କ'ଣ ବାପା ! ସତୁରା କ'ଣ କଲା ?

ମାଗୁଣି ବଣ କାଠ, କୋଇଲା, ବୋହିକି ଏଗୁଡା ମଗରା ହେଇଗଲେଣି । କାହାରିକି ମାନୁ ନାହାଁନ୍ତି ।

ନିଧିଆ ଆରେ ପଞ୍ଚୁଆ ! ତୁ ଏମିତି କାନ୍ଦୁଚୁ କାଇଁକି ?

ମାଗୁଣି ପିଲାଟା ଠେଇଁ ସତୁରା କେଡେହାନ୍ତେ ସାଇକଲ ମଡେଇ ଦେଇଚି ଦେଖ୍ । ତା ଆଣ୍ଠୁଟା ଆଉ କ'ଣ ଅଛି ?

ନିଧିଆ ଦେଖ୍ । (ନିଧିଆ ପଞ୍ଚୁଆ ଆଣ୍ଠୁରେ ହାତମାରି ଦେଖିଲା ବେଳେ ପଞ୍ଚୁଆ ଚିକ୍ରାର କଲା)

ମାଗୁଣି ତୁ ଯାଇକି ସତୁରାକୁ ପଚାର । ମୁଁ ଯାଏଁ ଦେଖେ ବଳଦ ଦିଇଟା କୁଆଡେ ଗଲେ । (ପ୍ରସ୍ଥାନ)

ନିଧିଆ ଏମିତି କେମିତି ହେଲା ?

ପଞ୍ଚୁଆ (କାନ୍ଦି କାନ୍ଦି) ମୁଁ ମୋର ବହିବସ୍ତାନି ଧରିକି ଆଉଥିଲି । ମୋର କିଛି ଦୋଷ ନାହିଁ । ସିଏ ମୋ ଠେଇଁ ସାଇକଲ ପେଡଲ ବଜେଇ ଦେଲା । ଦେଖିଲ ମୋ ଆଣ୍ଠୁଟା କେମିତି ଫୁଲି ଗଲାଣି ।

ନିଧିଆ ଛୁଆଟା ଉପରେ ସାଇକଲ ଚଢ଼େଇ ଲହୁନୁହାଣ କରି ଦେଇଚି । ସିଏ ମୋ କରାମତି ଜାଣିନେଇଁ । ପୁଅକୁ ନିଜ ରୂପ ନଦେଖେଇଲେ ତା ମଗଜ ଥଣ୍ଡା ହବ ନେଇଁ ।

ମହନି (ପ୍ରବେଶି) କାହାକୁ ନିଜୁ ରୂପ ଦେଖେଇବୁ ନିଧିଆଇ ?

ନିଧିଆ ତଳ ସାଇ ସତୁରା ମ । କୋଉଠୁ ଗୋଟେ ପୁରୁଣା ସାଇକଲ

କିଣି ଚୋରା କୋଇଲା ବିକୁଚି ଯେ ତା ଆଖିକୁ ଆଉ ମଣିଷ ଦିଶୁ ନାହାଁନ୍ତି । ଦେଖିଲୁ ମହନି ! ନାଇଁ ତୁ ଦେଖିଲୁ । (ପଞ୍ଚୁଆର ହାତକୁ ଧରି ଟାଣି ଟାଣି ଆଣି ମହନି ଆଗରେ ଠିଆ କରାଇଲା ।) ଏ ଛୁଆଟା ଉପରେ ସାଇକଲ ଚଢ଼େଇ ଯା ଅବସ୍ଥା କ'ଣ କରିଚି ।

ମହନି ଆରେ ତା ଆଣ୍ଠୁଟାରୁ ରକତ ଧାର ଛୁଟିଚି । ରକତ ଗୁଡାକ ପୋଛି ପକା । ନୂଆବୋଉ ଘରେ ନାହାଁନ୍ତି କି ? ଅଇଣ୍ଟିମେଣ୍ଟ ଟିକେ ନଗେଇ ଦେଇଥିଲେ ହେଇ ନଥାନ୍ତା ?

(ରକତ ପୋଛିବାକୁ ଆରମ୍ଭ କଲା)

ନିଧିଆ ତା ମାଆ ସାଇ ଆଡେ ଯାଇଚି । ନାଇଁ ସେମିତି ଥାଉ, ମୁଁ ତାକୁ ନେଇକି ଆଗ ସତୁରାକୁ ଦେଖେଇବି ତାପରେ ଯୋଉ କଥା ।

ମହନି ତୋର ଯୋଉ କଥା, କିରେ ତାକୁ ପୁଲିସି ଗୋଡେଇଚି, ସିଏ କ'ଣ ଏ ବେଳେ ଘରେ ଥିବ ଯେ ତୁ ତାକୁ ଦେଖେଇବୁ ?

ନିଧିଆ (ପଞ୍ଚୁଆ ପ୍ରତି) ତୁ ଆମର ଯା, ଗନ୍ଧିଆ ଦାଦା ଘରେ ଟିକେ ଅଇଣ୍ଟିମେଣ୍ଟ ନଗେଇ ଦେଇ ଆସିବୁ । ଆସିଲା ବେଳେ ବୋଉକୁ ସାଇରୁ ଡାକି ଆଣିବୁ ।

(ପଞ୍ଚୁଆର ପ୍ରସ୍ଥାନ)

ମହନି ମୁଁ ତୋ ଦି ଦାଦାଙ୍କ ସାଙ୍ଗରେ କଥା ହେଉ ସାରିଚି । ସେମାନେ ରାଜି ଅଛନ୍ତି । ସେମାନେ କହିଲେ - ଆମ ଭାଗସିନା ଆମେ ବିକିବୁ, ହେଲେ ତାଙ୍କ ଭାଗ ପାଇଁ ମାଗୁଣି ଭାଇକୁ ପଚାର । ମାଗୁଣି ବଡବାପା ତ ବୁଢ଼ାଲୋକ, ତାଙ୍କ ଠେଇଁ କ'ଣ ଅଛି ? ତୁ ହଁ ମାଇଲେ ହେଲା ।

ନିଧିଆ କୋଉ କଥା ?

ମହନି ଏଇ ଆମ୍ବତୋଟା କଥା ।

ନିଧିଆ ଆମ୍ବ ତୋଟା କଥା କ'ଣ ?

ମହନି ତମ ଆମ୍ବ ତୋଟାରେ ଗଛ ଗୁଡାକ ବୁଢ଼ାହେଇ ଗଲାଣି । ଆମ୍ବ ଫାମ୍ବ କିଛି ଫଳୁ ନେଇ । ସେଗୁରା ରଖିକି ଲାଭ ନାହିଁ । ବିକିରି କରିଦେଲେ ଟଙ୍କା ମିଳିବ, କାମରେ ଲାଗିବ ।

ନିଧିଆ ମୂଲଚାଲ ହେଲାଣି ?

ମହନି ତମ ସମସ୍ତଙ୍କି ନପଚାରୁଣୁ ମୂଲଚାଲ କରିଥାନ୍ତି କେମିତି ? ଯଦି କଇବୁ କାଲି ସକାଳୁ ତୋ ଦାଦା ହେରିକାଙ୍କୁ ଡକାଇ ତୋଟାଟା ମୂଲ କରି ଦେବା ।

ନିଧିଆ ତୁ ପରା ଅନ୍ୟମାନଙ୍କ ତୋଟା କିଣିଥିଲୁ ?

ମହନି ହଁ ।

ନିଧିଆ ସେମାନଙ୍କୁ ଗଛ ଗୋଟି କେତେ ଟଙ୍କା ଦେଇଚୁ ?

ମହନି ଗଛ ଅନୁସାରେ ଦଅର ନା, ସବୁ ଗଛର କ'ଣ ସମାନ ଦର ? ତୁ ଯଦି କଇବୁ ଆଜି ତୋଟାକୁ ଯାଇକି ମୂଲ କରିଦେବା ।

ମାଗୁଣି (ପ୍ରବେଶି) କିରେ ମହନି ! କାହା ତୋଟା ମୂଲ ହବ ?

ନିଧିଆ ଆଉ କାହା ତୋଟା ଅଛି କି ? ସମସ୍ତଙ୍କ ତୋଟା ବିକିରି ସଇଲାଣି । ଆମ ତୋଟା ବିକିରି ହବ । ଦାଦା ହେରିକା ମହନିକି ଆମ ଘରକୁ ପଠେଇଚନ୍ତି ।

ମାଗୁଣି (ରାଗିଯାଇ) ତାଙ୍କ ଭାଗ ସିଏ ବିକିଲେ ବିକନ୍ତୁ, ଆମ ଭାଗ ବିକିରି ହବ ନେଇଁ । ଏତେ ଖାଇ ଖାଇ ଅଣ୍ଟିଲା ନାହିଁ ? ବାପ, ଅଜା ଗଛ ନଗେଇଥିଲେ, ଇଏତ ଗୋଟେ ପୋତିବେ ନେଇଁ, ଓଲଟି ଗଛ ହାଣିକି ବିକିବେ ।

ମହନି ସେ ଗଛ ଥାଇଁକି ଆଉ କ'ଣ ହବ ? ଗୋଟେ ହେଲେ ବି ଆମ୍ବ ଫଳୁ ନେଇଁ ।

ମାଗୁଣି ଫଳୁ ନେଇଁ ବୋଲି କିଏ କଇଲା ? ଫି ବରଷ ବଉଳ ଆଉଚି, କଷି ଧରୁଚି, ଏ ଗାଆଁର ବାଳୁଙ୍ଗା ଛୁଆ କଷି କୁଷା ସବୁ ପାରିକି ଖାଇ ଯାଉଚନ୍ତି । ଜଗାରଖା କଲେ ସିନା ହୁଅନ୍ତା ।

ମହନି ଗାଆଁ ଯାକ ସମସ୍ତେ ଗଛ ବିକି ସାରିଲେଣି । ଚରଣି ଦାଦା, ଆଉ ଧରଣୀ ଦାଦା ତାଙ୍କ ଭାଗ ଆମ୍ବଗଛ ବିକିବେ । ତମର ସେଠି ଆଉ କେଇଟା ଗଛ ରହିବ ଯେ ତାକୁ ଗୋଟେ ଜଗୁଆଳ ଜଗେଇବ ?

ମାଗୁଣି ଏ ଗାଆଁବାଲାଙ୍କୁ କିଛି ଅଣ୍ଟିବ ନେଇଁ । ଦିନେ ଆମ ଏ ଗାଆଁ ଚାରିପାଖେ ଅଝାଳ ବଣ ଥିଲା । ମୋର ମନେ ଅଛି ଆମ ଗାଆଁ ଗୋହିରୀ ଦେଇ ବାଘ, ହାତୀ ପାରି ହେଉଥିଲେ ।

ତୋଟା ତଳ ବଣରୁ ଶଗଡ, ଲଙ୍ଗଳ ଆଉ ଘର ତିଆରି କରିବା ପାଇଁ ବଢ଼ିଆ କାଠ ମିଳୁଥିଲା । ଏ ଗାଆଁବାଲା ସବୁ ହାଣିକି ବିକିଲେ । ବଣ ପଦା କରି ଦେଲେ । ଏ କୋଡିଏ କୋଷ ଭିତରେ ଅନାବନା ଗଛଟିଏ ବି ନାହିଁ । ଶେଷକୁ ବାପ ଅଜା ନଗେଇଥିବା ସାତ ପୁରୁଷର ଆମ୍ବ ଗଛ ହାଣିକି ବିକି ଖାଉଚନ୍ତି । ଏ ଗୁଡାଙ୍କୁ ଧରମ ସହିବ ନାହିଁ ।

ନିଧିଆ କେହିତ ଧରମକୁ ଅନଉଁ ନାହାଁନ୍ତି, ଆମେ ଏକୁଟିଆ ଅନେଇଲେ କ'ଣ ହବ ?

ମାଗୁଣି ସିଏ ଯାହା ହଉ ଆମ ଭାଗ ଆମ୍ବ ଗଛ ମୁଁ ବିକେଇ ଦେବି ନେଇଁ ।

ମହନି ମୁଁ ତେବେ ଯାଉଚି ନିଧିଆଇ ?

ନିଧିଆ ବାପାଙ୍କ କଥାରୁ ତୁ କ'ଣ ପାଇବୁ ମ ? ବାପ, ଅଜା ଚଉଦ ପୁରୁଷଙ୍କ ନାଆଁକୁ ଧୋଇକି ପାଣି ପିଇଲେତ ଆଉ ଆମ ପେଟ ପୂରିବ ନେଇଁ ।

ମାଗୁଣି (ରାଗିଯାଇ) ମୁଁ କହି ଦଉଚି ନିଧିଆ, ମୁଁ ଆମ୍ବଗଛ ବିକେଇ ଦେବି ନେଇଁ, ଦେବି ନେଇଁ, ଦେବି ନେଇଁ । ଏଇଟା ମୋର ଶେଷ କଥା । (ରାଗି କରି ଚାଲିଗଲେ)

ନିଧିଆ (ବାପାଙ୍କ ଯିବା ବାଟକୁ ଚାହିଁ) ତୁ ବ୍ୟସ୍ତ ହୋନା ମହନି । ମୁଁ ବାପାଙ୍କୁ ରାଜି କରେଇ ଦେବି ।

ମହନି ହଉ ତେବେ ମୁଁ ଯାଉଚି ।

ନିଧିଆ ମୂଲଚାଲ କୋଉଦିନ ହେବ କହିଲୁ ନାହିଁତ ?

ମହନି ମୁଁ ଆଜି କଲିକତା ଯାଉଚି । ପଅରି ଦିନ କି ଅପୁରିଦିନ ଆସିବି । ମୁଁ ଆଇଲେ ଗଛ ମୂଲ କରିବା ।

ନିଧିଆ ଆମ ତୋଟାରେ ପଚାଶଟା ହବ ଗଛ ଅଛି ।

ମହନି ଯାହା ଅଛି ସେଇଦିନ ଦେଖିବା । ମୁଁ ଯାଉଚି ନିଧିଆଇ ଗାଡି ବେଳ ହେଇଗଲାଣି ।

ନିଧିଆ ତୋ ପାଖରେ ଥିଲେ ଟଙ୍କା ଦିଇଶ ଦେଇଥା ମହନି । ଗଛ ବିକିରି ପଇସାରୁ କାଟି ନବୁ । ଦୋକାନୀଟା ତା ବାକି ପଇସା ପାଇଁ ଆଉ ବସେଇ ଉଠେଇ ଦଉନେଇଁ ।

| | |
|---|---|
| ମହନି | ମୋ ପାଖରେ ଏଇନେ ଟଙ୍କା କାହିଁ ? ମୁଁ କଲିକତା ମହାଜନ ପାଖକୁ ଯାଉଚି । ତାଠୁ ଟଙ୍କା ଆଣିବି । ସେଠୁ ଆଇଲେ ଦିଇଣ କ'ଣ, ପାଅାଁଶ କଇଲେ ଦେବି । |
| ନିଧିଆ | ଦିଇଣ ନହେଲେ ଟଙ୍କା ଶହେଟା ଦେଉଥା । |
| ମହନି | ମୋ ରାଣ ନିଧିଆଇ ! ମୋ ଆଖି ଛୁଉଁଚି । ମୋ ପାଖରେ ମୋଟେ ଟଙ୍କା ନାହିଁ । ଟଙ୍କା ଶହେଟା ଅଛି କଲିକତା ଖରଚକୁ ପାଇବ ନେଇ । |
| ନିଧିଆ | ନହେଲେ ଟଙ୍କା କୋଡିଏଟା ଦେ । |
| ମହନି | ତୋର ତ ମୋ ଉପରେ ମୋଟେ ପତିଆରା ନାହିଁ । ଟଙ୍କା ରଖିକି ମୁଁ କ'ଣ ତତେ ଦଉ ନେଇଁ ? |
| ନିଧିଆ | ମୋର ତୋ ଉପରେ ପତିଆରା ଥିଲେ କ'ଣ ହବ ? ଦୋକାନୀରତ ମୋ ଉପରେ ପତିଆରା ନାହିଁ । ସିଏ ଆଉ ସଉଦା ଦଉନେଇଁ । |
| ମହନି | କ'ଣ ସଉଦା ଆଣିବୁ ଚାଲ୍, ମୁଁ ଦୋକାନୀ ପାଖରେ ମାନି ହେବି । |
| ନିଧିଆ | ହଉ ଚାଲ୍ । |
| | (ଦୁହିଁଙ୍କର ପ୍ରସ୍ଥାନ) |



# ଦ୍ୱିତୀୟ ଦୃଶ୍ୟ

(ମାଗୁଣିର ଘର । ସମୟ ରାତି । କନକ ଚୁଲି ଲଗାଉଛି । ଚୁଲିରେ କିଛି କାଠିକୁଟା ପକାଇ ଫୁଙ୍କୁଛି । ଚୁଲି ଜଳୁନାହିଁ । ଧୂଆଁ ହେଉଛି ।)

ନିଧିଆ (ବାହାରୁ ଆସି) କ'ଣ ଶୁବୁ ନେଇ ?

କନକ (ଚୁଲି ଫୁଙ୍କିବା ଛାଡ଼ି ବୁଲିକି ଚାହିଁଲା) ମତେ କହୁଚ ?

ନିଧିଆ : ଏଠି ଆଉ କିଏ ଅଛି, କାହାକୁ କହିବି ?

କନକ କ'ଣ କଇବାରେ ଅଛି ଝଅଟ କୁହ ।

ନିଧିଆ ମୁଁ ଆଜି କାଠ ପେଇଁ ବଣକୁ ଯିବି । ଝଅଟ ଗୋରୁ ଭାତ ବସା ।

କନକ ମଣିଷ-ଭାତ ରାନ୍ଧିବାକୁ ତ ଜାଳ ନାହିଁ, ଗୋରୁଭାତ କଥା କିଏ ପଚାରୁଛି ? (ଚୁଲିଫୁଙ୍କିବାରେ ମନ ଦେଲା)

ନିଧିଆ ହଁମ, ସବୁଦିନେ ସେମିତି ନାହିଁବୋଲି କହୁଛୁ, ପୁଣି କରୁଚୁ ।

କନକ ବାରିଘର କୋଉଠି ହେଲେ ବକଟେ କାଠ ନାହିଁ । ଯାହା ଯେଉଠି ଥିଲା ସବୁ ରୁଣ୍ଡେଇ ସାଉଁଣ୍ଟି ଜାଳି ସାରିଲିଣି । ଆଉ କିଛି ନାହିଁ ।

ନିଧିଆ ଆମ ଗାଆଁ ବାଲାଙ୍କୁତ ଫରଷ୍ଟର ଜାଳକାଠ ଛାଡ଼ି ଦଉ ନେଇଁ । ମୁଁ ଆଣିବି କୋଉଠୁ ?

କନକ ତମେ ନିଜେ ରୋଷଇ କଲେ ଜାଣନ୍ତ ଜାଳକାଠ ପାଇଁ ମୁଁ କେତେ ହୀନସ୍ତା ହଉଚି । ତମ ତଇଳାରୁ ଖୁଣ୍ଟା ମେଣ୍ଟା ତାଡ଼ିକି ଆଣୁନା, ମୁଁ ଶୁଖେଇକି ଜାଳନ୍ତି ।

ନିଧିଆ ମୋର ଦୁଃଖ ଯାଉ ନେଇଁ ଖୁଣ୍ଟା ମେଣ୍ଟା ତାଡ଼ିବାକୁ ।

କନକ ଜୁଜୁକି ବାପା କେମିତି ଖୁଣ୍ଟା ମେଣ୍ଟା ତାଡ଼ିକି ଆଣୁଚନ୍ତି ?

ନିଧିଆ ଜୁଜୁକି ବାପା ଆଉ ମୁଁ ସମାନ ? ସେଇଟା ମାଇଚିଆଟା ବଣ

ନାଆଁ ଶୁଣିଲେ ତାକୁ ଝାଡ଼ା ହୋଇଯିବ । ସିଏ ଖୁଣ୍ଟା ଡାଡ଼ିବ ନେଇଁ ଆଉ କ'ଣ ଗଛ ହାଣିବ ? (ହସିଲା)

ଗନ୍ଧିଆ (ପ୍ରବେଶି) ନିଧିଆଇ ! ନିଧିଆଇ ! ଘରେ ଅଛୁକି ?

ନିଧିଆ କିଏ ? ଗନ୍ଧିଆ କିରେ ! ଆସୁନଉଁ । ଘର ଭିତରକୁ ଆ । ସେଠି କାଇଁକି ଠିଆ ହେଲୁ ? (କନକ ପ୍ରତି)ତୁ କାଇଁକି ଠିଆ ହେଲୁ ଯା, ଗୋରୁଭାତ ବସେଇବୁ ଯା ।

ଗନ୍ଧିଆ ନିଧିଆଇ ! ଟଙ୍କା ଅଛିକି ? ଦଶଟା ଧାର ଦେଲୁ ।

ନିଧିଆ କିରେ ଟଙ୍କା କ'ଣ କରିବୁ ?

ଗନ୍ଧିଆ ସେ ଗୁଡ଼ା ଲାଜ କଥା କ'ଣ କହିବି ?

ନିଧିଆ କିରେ ମୋ ପାଖରେ ନାଜ କ'ଣ ?

ଗନ୍ଧିଆ ଆଜି ରାତି ପାଇଁ ଆମ ଘରେ ଚାଉଳ ନାହିଁ ।ଅଛି ଯଦି ଟଙ୍କା ଦଶଟା ଦେ । ଚାଉଳ କିଣିଲେ ଭାତ ରାନ୍ଧାହେବ ।

ନିଧିଆ ଟଙ୍କା କାଇଁ ?

ଗନ୍ଧିଆ ଟଙ୍କା ନଥିଲେ ଚାଉଳ ଦି'କିଲେ ଦେ । ଭାତ ହେଲେ ମୁଁ ଖାଇକି ବଣକୁ କାଠ ପେଇଁ ଯିବି ।

ନିଧିଆ ଆମର ବି ଚାଉଳ ସରିଲାଣି । ହଉ ତୁ ଚାଲ, ମୁଁ ତତେ ଫକିର ଦୋକାନରୁ ଚାଉଳ ଦି'କିଲ ବାକିରେ କରେଇ ଦେବି । (ନିଧିଆ ଉଠିଲା)

ଗନ୍ଧିଆ ତତେ କ'ଣ ଫକିର ବାକି ଦବାକୁ ରାଜି ହଉଚି ?

ନିଧବିଆ ଆରେ ନାଇଁମ, ମହନି ଦଶ କିଲ ଚାଉଳକୁ ମାନି ପଡ଼ିଚି । ଦି'କିଲ ମୁଁ ଆଣିଚି । ଆଉ ଦି'କିଲ ତୁ ନେଇଯା ।

ଗନ୍ଧିଆ ହଉ ଚାଲ

(ଦୁହେଁ ବାହାରକୁ ଗଲେ)



ଆନଂଦ ଚଂଦ୍ର ପହି

# ତୃତୀୟ ଦୃଶ୍ୟ

(ମାଗୁଣିର ଘର । ସମୟ ସକାଳ । କନକ ଅଗଣା ଓଳଉ ଥିଲା । ମାଗୁଣି ପିଣ୍ଡା ଉପରେ ବସି ଦାନ୍ତ ଘସୁଥିଲା ।)

ମାଗୁଣି ବୋହୂ !

କନକ (ସେମିତି ଅଗଣା ଓଳଉ ଓଳଉ) କ'ଣ ବାପା ! ପାଣି ଦେବିକି ?

ମାଗୁଣି (ଦାନ୍ତ ଘସୁ ଘସୁ ଛେପ ପକାଇ) ପାଣିତ ଏଇଠି ଢ଼ାଳରେ ଅଛି ।

କନକ ଆଉ ତାହାଲେ କାଇଁକି ଡ଼ାକିଲ ?

ମାଗୁଣି ବାଇରେ ଶଗଡ଼ ନାହିଁ କି ଗୁହାଳେ ବଳଦ ହଳକଯାକ ନାହାଁନ୍ତି । ନିଧିଆ ଆଜି ପୁଣି ବଣକୁ କାଠ ପେଇଁ ଯାଇଚିକି ?

କନକ ତାଙ୍କ ଦିହଟା କସମସ ନାଗୁଥିଲା, ହେଲେ ନଗଲେ ନଚଳେ । ଘରୁ ପରା ଚାଉଳ ସଇଲାଣି ।

ମାଗୁଣି ବଳଦଙ୍କ ତତଲା ନିଃଶ୍ୱାସରେ କାହାକୁ ଅଣ୍ଟିନେଇଁ କି ଅଣ୍ଟିବ ନେଇଁ ।

କନକ ଫି ବରଷ ଅପାଳକ, ମରୁଡ଼ି । ବିଲରୁ ଯାହା ଧାନ ଅମଳ ହଉଚି ଧାର ଉଧାର ଶୁଝିଦେଲା ପରେ ମାସ ଚାରିଟାକୁ ପାଉ ନେଇଁ । ବଣକୁ ନ ଗଲେ ଚୁଲିକି ହାଣ୍ଡି ଯିବ ନେଇଁ ।

ମାଗୁଣି ସେତିକି ବିଲ ମୁଁ ଚାଷ କରୁଥିଲି ଚଳୁଥିଲା ଫେର କେମିତି ? ମୁଁ ତ ଆଉ ବଣରୁ କାଠ ଚୋରିକରି ବିକୁ ନଥିଲି । ମୁଁ ଚାରି, ଚାରିଟା ଝିଅକୁ ବାହା କରିଛି, ଓଷାବାର ପୁନେଇଁ ପରବ ସବୁ ଉଠେଇଚି । କାଇଁ ମୁଁ ତ କୋଉଠୁ କରଜ ଦାମ୍ କରିନଥିଲି । ସବୁ ସେଇ ଚାଷରୁ ଚଳି ଆସୁଥିଲା ।

କନକ ଇଏ କ'ଣ ଆଉ ମଦ ପିଇ ଟଙ୍କା ପଇସା ଉଡେଇ ଦଉଚନ୍ତି ?

ମାଗୁଣି	ମଦ ନପିଇଲେ କ'ଣ ହବ, ବଳଦଙ୍କ ନିଃଶ୍ୱାସ ପଡୁଚି । ବଳଦ ଗୁଡାକୁ ଅଖିଆ ଅପିଆ, ଖରାତରାରେ ବାଡେଇ ବାଡେଇ ଶଗଡ ବୁହାଉଚି । ପଶୁ ଜାତି, ସେମାନଙ୍କର ପାଟି ଫିଟୁ ନାହିଁ ବୋଲି ସିନା, ନହେଲେ କେତେ କଷ୍ଟ ସିଏ ନ ପାଉଚନ୍ତି । ଛାତିଫଟା ବୋଝ ବୋହି ଅଧା ବଅସରେ ବୁଢ଼ା ହୋଇ ଯାଉଛନ୍ତି । ସେମାନେ କ'ଣ ଅପସାଇପ ଦଉ ନଥିବେ ?

କନକ	ସମସ୍ତେ ସେମିତି ବୋହୁଚନ୍ତି ନା ଇଏ କ'ଣ ଏକୁଟିଆ ? ଏ ଗାଆଁରୁତ ଫାଳେ ଲୋକ ବଣରୁ କାଠ ବିକି ଚଳୁଛନ୍ତି ।

ମାଗୁଣି	ଯିଏ ବୋହୁଚି ତା ପାପ ତାର । ତୁ ଦେଖିଥା କହିଲୁ ବୋହୂ ! ଏ ଗାଆଁରେ କାଠ ବୋହିକି କିଏ ଭଲରେ ଅଛି ? କିଏ କୋଠା ବାଡେଇଚି ?

କନକ	ଅଭାବ ଯୋଗୁତ ବଣକୁ ଯିବା କଥା, ଭଲରେ ଆଉ କଣ ରହିବେ ?

(ଏତିକି ବେଳେ ଗନ୍ଧିଆର ବାପା ଗଦେଇ ପଧାନ ତାଙ୍କ ବାଛୁରୀ ଖୋଜିବାକୁ ଆସିଲା । ତା ହାତରେ ବାଛୁରୀ ପଘା ।)

ଗଦେଇ	ମାଗୁଣି ଭାଇ ! ତମ ଘର ଆଡେ ଆମ ଗୁରୁବାରୀର ବାଛୁରୀଟା ଆଇଥିଲା କି ?

(କନକ ମୁଣ୍ଡରେ ଓଢ଼ଣା ଦେଇ ଘର ଭିତରକୁ ଚାଲିଗଲା ।)

ମାଗୁଣି	(ମୁହଁ ଧୋଇ ହୋଇ ସାରି) ତମ ବାଛୁରୀ ? ଗୁରୁବାରୀ କୋଉଟା କହିଲୁ ?

ଗଦେଇ	ଆମ ଗନ୍ଧିଆ ଶଶୁରଘର ଯୋଉ ନାଲି ଗାଈଟା ଦେଇଥିଲେ ମ ।

ମାଗୁଣି	ବୁଝିଲି, ବୁଝିଲି । ତାର ଅଣ୍ଡିରା ବାଛୁରୀ ନା ମାଈ ବାଛୁରୀ ?

ଗଦେଇ	ଅଣ୍ଡିରା ବାଛୁରୀଟା । ଚାରିମାସର ବାଛୁରୀ, ତା ପିଠିରେ ଗୋଟେ ଛୋଟ ଜଟ ଅଛି । ମହାଦେବଙ୍କ ନାଁରେ ତାକୁ ପାଣି ଛଡେଇ ଦେଇଚି ।

ମାଗୁଣି	ନାଇଁ ତୋ ବାଛୁରୀ ଆମ ଘର ଆଡେ ଆସି ନେଇଁ । ଠିଆ ହେଲୁ କାଇଁକି ? ନେ, ଏଇ ପିଢ଼ାରେ ବଅ ।

ଗଦେଇ	ନାଇଁ, ବାଛୁରୀଟାକୁ ଖୋଜିକି ନନେଲେ ଗାଈଟା ଦୁହାଁ ହବ

କେମିତି ? କ୍ଷିର ନହେଲେ ଗନ୍ଧିଆ ପୁଅଟା ଭାତ ପାଖରେ ମୋଟେ ବସୁ ନେଇଁ ।

ମାଗୁଣି	ବସୁ ନଉଁ ଯିବୁତ, ଏତେ ଉଛନ୍ନ କାଇଁକି ? ଗନ୍ଧିଆ କ'ଣ ଘରେ ନାହିଁକି ?

ଗଦେଇ	ସିଏ ରାତି ଅଧରୁ ଉଠି, ଶଗଡ ନେଇ ବଣକୁ ଯାଇଚି ।

ମାଗୁଣି	ରାତି ଅଧରୁ ?

ଗଦେଇ	ଏ ପାଖ ଆଖରେ ଆଉ କ'ଣ ବଣ ଜଙ୍ଗଲ ଅଛି ? ସବୁ ପରା ହାଣିକି ପଦା କରି ଦେଲେଣି । ଗନ୍ଧିଆ କହୁଥିଲା ରାତି ଅଧରୁ ଗଲେ ବଣରେ ପହଞ୍ଚୁ ପହଞ୍ଚୁ ତହିଁ ଆର ଦିନ ଦିପହର ହେଇ ଯାଉଚି । ତମ ନିଧିଆ କ'ଣ ବଣକୁ ଯାଇନିକି ?

ମାଗୁଣି	ସିଏତ ଆଗ । ସିଏ ନ ଯାଇ ଆଉ କିଏ ଯିବ ? ଚାଷରେ ମୋଟେ ମନ ପୂରୋଉ ନେଇଁ ।

ଗଦେଇ	ଆମ ଗନ୍ଧିଆ ବି ସେଇଆ । ଚାଷ ନାଆଁ ମୋଟେ ଧରୁ ନେଇଁ । ବଣକୁ ଦିନେ ଗଲେ ତିନିଦିନ ଘରେ ଶୋଉଚି । କାଠ ଚୋରି କ'ଣ ସହଜ ପଡିଚିକି ? ରାତି ଅଧରେ ଲୁଚି ଛପି ବଣକୁ ଯିବ । ଗୋଟାକୁ ପାଞ୍ଚଟା ଗଛ ହାଣିବ । ପୋଲା, ମଳିହା ଦେଖି ଡାଙ୍କ, ପତର ହାଣି ସାଇଜ କରିବ । ପୁଲିସ୍, ଫରଷ୍ଟରଙ୍କୁ ଡରି ବାଟ ଛାଡି ଅବାଟରେ ବୁଲି ବୁଲି ଘରକୁ ଆସିବ । ଯଦି ବାଟରେ ଚକକି ଅଖ ଭାଙ୍ଗିଲା, କି ଦଉଡି ଛିଡିଲା, ତା ହେଲେ ଅବସ୍ଥା ବାର ବାଜିବ ।

ମାଗୁଣି	ହଁ, ସେଇଆ ନୁହଁ ଆଉ କ'ଣ ? ବୋହୂ, ଏ ବୋହୂ ।

କନକ	(ଘର ଭିତରେ ଥାଇ ଜବାବ ଦେଲା) ଯାଉଚି ବାପା !

ମାଗୁଣି	ମୋ ପେଇଁ ଆଉ ଗଦେଇ ପେଇଁ ଚା ଆଣ ।

ଗଦେଇ	ନାଇଁ ମାଗୁଣି ଭାଇ ! ମୁଁ ଘରେ ଚା ପିଇଚି ।

ମାଗୁଣି	କ୍ଷିର ତ ନଥିଲା, ଚା କେମିତି ଖାଇଲୁ ?

ଗଦେଇ	ନାଲି ଚା ପିଇଚି ।

ମାଗୁଣି	ଆମର କ୍ଷିର ଚା ହେଇଚି, ଟିକେ ପି । ବୋହୂ ।

କନକ	(ପ୍ରବେଶି) ନିଅ ବାପା !

(ଦୁଇଟି କଂସା ଗିଲାସରେ ଦୁଇ ଗ୍ଲାସ ଚା' ଆଉ ଗୋଟିଏ

ବେଳାରେ କିଛି ମୁଢ଼ି ଥୋଇ ଦେଇ କନକ ଘର ଭିତରକୁ ଚାଲିଗଲା)

ମାଗୁଣି ନେ ଗଦେଇ ! ଆରେ ଏମିତି ଲାଜ କରୁଚୁ କ'ଣ ? ନେ ।

ଗଦେଇ (ଚା ଗ୍ଲାସଟା ମାଗୁଣି ହାତରୁ ନେଉ ନେଉ) ନାଜ କାଇଁକି କରିବି ? ସକାଳୁ ଗିଲାସେ ନାଲି ଚା' ପିଇଥିଲିତ ସେଇଥି ପାଇଁ ଡର ମାଡୁଚି । କାଳେ ପେଟ ଗରମ ହେଇଯିବ ।

ମାଗୁଣି ଖାଲି ପେଟରେ ଖାଇଲେ ସିନା ପେଟ ଗରମ ହବ, ନେ ମୁଢ଼ି ବି' ମୁଠା ପାଟିରେ ପକା ।

ଗଦେଇ ଯାଚିବା ଧନ ଛାଡିବାର ନୁହଁ, ଦିଅ ।

(ମାଗୁଣି ଓ ଗଦେଇ ଚା'ରେ ମୁଢ଼ି ପକାଇ ଫୁଙ୍କି ଫୁଙ୍କି ଚା' ପିଇଲେ)

ମାଗୁଣି ଏ ଟୋକା କ'ଣ କାହା କଥା ମାନୁଚନ୍ତି ? ଆମ ନିଧିଆ ମୋ କଥା ମୋଟେ ମାନୁ ନେଇଁ । ଯେତେ ମନାକଲେ ବଣରୁ କାଠ ଚୋରି କରିବା ଛାଡୁ ନେଇଁ ।

ଗଦେଇ ଫି ବରଷ ହାତୀ ନେଖା ବଡ ବଡ ବଳଦ ଗୋଟାକୁ ଚାରି, ପାଞ୍ଚ ହଜର ଟଙ୍କା ଦେଇ ଆଣୁଚନ୍ତି । ଗୋଟେ ବରଷ କାଠ ବୁହାରେ ସେ ବଳଦ ରଦି ହେଇ ଯାଉଚନ୍ତି । ଶଗଡ ବୁହା ବଳଦ ଚାଷକୁ ମୋଟେ ପାରୁ ନାହାଁନ୍ତି ।

ମାଗୁଣି ବଣରୁ କାଠ ଆଣିବାକୁ ନାଗୁଚି ତିନିଦିନ, ପୁଣି ତାକୁ ବିକିବାକୁ ନାଗୁଚି ଦିଇ ଦିନ । କାଠ ଗାଡିକୁ ପାଞ୍ଚ ଶହ, ସାତ ଶହ ହେଲେ କ'ଣ ହବ ? ଘୋଡା ନଅଟଙ୍କା ଦାନା ଛଅ ଟଙ୍କା ହଇରାଣ ପନ୍ଦର ଟଙ୍କା । ଏତେ ଗୁଡେ ଟଙ୍କା ଗୋଟାଏ ଦିନରେ ପାଇ ଆଖି ତାଙ୍କର ତାଳୁକୁ ଉଠି ଯାଉଚି । ବସିଯାଉଚନ୍ତି ହୋଟଲରେ । ଅମିରି ଘର ପୁଅ ନେଖା କସି ଦଉଚନ୍ତି ମାଉଁସ ପଲଉ ଗିରାସେ ।

ଗଦେଇ ତାଙ୍କର ସେତେବେଳକୁ ହେଜ ରହୁ ନେଇଁ କେତେ ଦିନ ଏ ଗାଡିକ କାଠ ପେଇଁ ନିକିମା ହେଲେଣି । ଶଗଡ ବଳଦ ସାଙ୍ଗକୁ, ବି, ବି ଜଣ ମଣିଷ ପାଞ୍ଚ ପାଞ୍ଚ ଦିନ କମେଇ ହବା କଥା ହୋବ ରହୁ ନେଇଁ ।

ମାଗୁଣି ଖାଲି କ'ଣ ସେତିକି ? ଆମ ଗାଆଁରେ ଯେତେଲୋକ କାଠ ଚୋରି କରୁଚନ୍ତି କାହା ନାଆଁରେ ଚାରିଟା ଛଅଟା ମକଦ୍ଦମାରୁ ଊଣା ଅଛି ? ଫି ମାସରେ କଚେରୀରେ ମକଦ୍ଦମା ତାରିକ । କାହା ନାଆଁରେ ଥାନରେ ଗିରଫ ପରୁଓ୍ୱାନା ନାହିଁ ?

ଗଦେଇ ଆମର ତ ଦି' ବରଷ ତଳେ ଖଣ୍ଡେ ଶଗଡ ବଣରୁ ଧରା ହେଇ ଥାନାକୁ ଯାଇଥିଲା । ଗଲାସନ ବନ୍ଦନକାଠର ଶଗଡ ଖଣ୍ଡେ ହରି ମେହେଣା ପାଖରେ ଗଢ଼େଇଥିଲି । ବଡ କାଠ ବାନ୍ଧି, ଅବାଟରେ ପକେଇ ନୂଆ ଶଗଡଟାକୁ ଭାଙ୍ଗି ସାରିଲାଣି ।

ମାଗୁଣି ଭାଙ୍ଗିଗଲା ? ଦଣ୍ଡା ନା ଚକ ? କ'ଣ ଭାଙ୍ଗିଲା ?

ଗଦେଇ ବାଆଁ ଚକରୁ ଦିଇଟା ପୁଟି ମୋଡି ହେଇ ଯାଇଚି । ତିନିଟା ଅର ଚହଲି ଯାଇଚି । ତମେ ଯାହା କୁହ ମାଗୁଣି ଭାଇ ! ଚୋରା କାଠ ବୋହିଲେ ଶଗଡର ଅବସ୍ଥା ରହିବ ନା ବଳଦର ଅବସ୍ଥା ରହିବ ? ପୁଲିସି କି ଫରଷ୍ଟର ଗୋଡେଇଲା ବେଳେ ଶଗଡିଆ ବଳଦକୁ ପିଟେ । ବଣ, ଖମଣ କିଛି ନମାନି ଖେପାମାରି ବଳଦ ଉଧୁଳନ୍ତି । ଚୋର, ପୁଲିସି ଗୋଡିଆ ଗୋଡି ଖେଳ ଚାଲେ । ସେତେବେଳେ ଶଗଡ କ'ଣ, ବଳଦ କ'ଣ ନା ମଣିଷ କ'ଣ ? କିଏ କାହାକୁ ଅନଉଁଚି ?

ମାଗୁଣି ତିରସ୍ତାସନ ଆମ ଗାଆଁ ଟୋକାଏ ପୁଲିସି ଫଉଜ ସାଙ୍ଗରେ ବଣରେ କେମିତି ନଢ଼େଇ କରିଥିଲେ ତୋର ମନେ ଅଛି ତ ?

ଗଦେଇ ହଁ, ଶାଗୁଆନ କାଠ ଚୋରି ବେଳେଡ୍ ?

ମାଗୁଣି ହଁ । ହଁ । ଶାଗୁଆନ କାଠ ଚୋରି ବେଳେ ଆମ ଗାଆଁ ଟୋକାଙ୍କୁ ପୁଲିସି ଫଉଜ ଚାରିକଡୁ ଘେରିଗଲେ ।

ଗଦେଇ ପୁଲିସିର ବନ୍ଧୁକକୁ ଯାଙ୍କର କୁରାଢ଼ୀ, ଟାଙ୍ଗିଆ, ନେଥେରୀ, କୁଆଳି ଆଉ ଢ଼ିମା, ପଥର ଫିଙ୍ଗା ଫିଙ୍ଗି ।

ମାଗୁଣି ଏ ଗାଆଁ ଟୋକାଙ୍କର କ'ଣ କଅମ ବହପ ? ପୁଲିସିବାଲାଙ୍କ ସାଙ୍ଗେରେ ଛାତି ପତେଇ ଦଉଚନ୍ତି ।

ଗଦେଇ ପୁଲିସି ଯେମିତି ବନ୍ଧୁକରୁ ଦି' ଚାରିଟା ଫାଙ୍କା ଆବାଜ କରି ଦେଇଚନ୍ତି ଆମ ଗାଆଁ ଟୋକାଏ କିଏ କୁଆଡେ ଶଗଡ ବଳଦ ଛାଡିକି ଛୁମାରିଲେ ।

ଆନଂଦ ଚଂଦ୍ର ପହି

ମାଗୁଣି ଗୁଳି, ବନ୍ଧୁକ ଆଗରେ ଏଗୁଡା ଅଲଣା ସାହାସ ଦେଖଉଚନ୍ତି ନା । ଖିଆ ନାହିଁ, ପିଆ ନାହିଁ । ବଣ ବୁଦାରେ ବୁଲି ବୁଲି ଏଗୁଡାଙ୍କ ହିଦରେ ଆଉ ଜୋର ଅଛି ?

(ଏତିକି ବେଳେ କନକର ସାନ ପୁଅ ପଞ୍ଚୁଆ ଘର ଭିତରେ ଥାଇ କାନ୍ଦି ଉଠିଛି । କନକ ପଞ୍ଚୁଆକୁ ଧରି ଘର ଦୁଆର ମୁହଁରେ ଠିଆ ହୋଇ ମାଗୁଣିକୁ ଶୁଣେଇ ଶୁଣେଇ କହୁଛି)

କନକ ମୋ କତିରେ କାନ୍ଦିଲେ ମୁଁ କୋଉଠୁ ଆଣିବି ? ଆରେ ରହ ମୋ ନୁଗାଟା ଟାଣନା । ଛାଡ କହୁଚି । ଚିରା ନୁଗାଟା ଏମିତି ଟାଣିଲେ ବଢ଼େ ଚିରି ଯିବ ।

ପଞ୍ଚୁଆ (ଗୋଡ ବାଡେଇ କାନ୍ଦିଛି) ନାଇଁ, ନ ହେଲେ ମୁଁ ଇସିକୁଲ୍‌କୁ ଯିବ ନେଇଁ ।

ମାଗୁଣି କାଇଁକି କାନ୍ଦୁଚୁ କିରେ ପଞ୍ଚୁଆ ?

କନକ ବାରି ଘର ସବୁଆଡେ ବୁଲି ଆସିଲି କୋଉଠି ଖଣ୍ଡେ ହେଲେ କାଠ ନାହିଁ । ତୁ ପଛେ ନଯାଆ, ମୁଁ କୋଉଠୁ ଆଣିବି ?

ମାଗୁଣି ଆରେ ହେ ! ତୁ ଏଠିକି ଆଇଲୁ ।

ପଞ୍ଚୁଆ (ସେଇଠି ଠିଆ ହୋଇ) ତମେ ଯଦି ଦବ ମୁଁ ଯିବି ।

ମାଗୁଣି ଆରେ କ'ଣ ଦେବି ? ଆ, ଏଠିକି ଆ ।

କନକ ଯା, ଜେଜେ ବାପାଙ୍କ ପାଖକୁ ଯା । ମୋ କତିରେ ବାଡେଇ ହେଲେ ମୁଁ କୋଉଠୁ ଆଣିବି ?

ମାଗୁଣି ଆ । ଆ ଏଠିକି ଆ ।
(ପଞ୍ଚୁଆ ଆସିଲା) କ'ଣ ନବୁ ?

କନକ ତାଙ୍କ ଇସ୍କୁଲରେ ନିଇତି ଖରାବେଳେ କ'ଣ ମକାଗୁଣ୍ଡ ରନ୍ଧା ହଉଚି । ସେଇଥି ପେଇଁ ଜାଳକାଠ ନବ । ଘରେ ଜାଳକାଠ କାଇଁ ଯେ ମୁଁ ତାକୁ ଦେବି ?

ପଞ୍ଚୁଆ କାଠ ନାହିଁତ ତୁ ସବୁଦିନେ ଭାତ ରାନ୍ଧୁଚୁ କେମିତି ?

କନକ ଭାତ ରାନ୍ଧିବା ପେଇଁ କେତେ ହୀନସ୍ତା ସେ କଥା ତମେ ସବୁ କେମିତି ଜାଣିବ ? ବାରିଘର ରୁଣ୍ଡେଇ ପୁଣ୍ଡେଇ କେତେ କଷ୍ଟରେ ଫୁରିକାଠ ପତର, କୁଟା ଆଣି ମୁଁ ଭାତ ରାନ୍ଧୁଚି ସେ କଥା ମୁଁ ଜାଣେ । ତୁ ଯାଆ, ଜେଜେ କାଠ ଦେବେ । ମୁଁ

ଯାଉଚି କୁଅରୁ ପାଣି ଆଣିବି । (ପ୍ରସ୍ଥାନ)

ମାଗୁଣି ହଉ ତୁ ବେଗ ହୋନା, ମୁଁ ତତେ କାଠ ଦେବି ।

ଗଦେଇ ମାଗୁଣି ଭାଇ ! ତମ ନିଧିଆ ପରା ବଣରୁ ଚୋରା କାଠ ବୋହୁଚି, ଘରେ କ'ଣ ମୋଟେ ଜାଳ କାଠ ନାହିଁ ?

ମାଗୁଣି ହଇରେ ଗଦେଇ ! ମତେ ତୁ ଏକଥା କ'ଣ ପଚାରୁଚୁ, ତୋ ପୁଅ ପରା ଚୋରା କାଠ ବୋହୁଚି ? ତୋ ଘରେ କ'ଣ ଜାଳ କାଠ ଅଛି ? କେଉଟ ମାରେ ମାଛ ଖାଏ କଙ୍କଡା । ଯାହା ଆଣୁଚନ୍ତି ତାକୁ ସାଙ୍ଗେ ସାଙ୍ଗେ ନେଇ ବିକି ଦେଇ ଆଉଚନ୍ତି, ଘର ଜାଳ କଥା କିଏ ପଚାରେ ?
(ଏହି ସମୟରେ ଦୂରରୁ ସ୍କୁଲ ଘଣ୍ଟା ଶୁଭିଲା)

ପଞ୍ଚୁଆ ଜେଜେ ବାପା ! ମତେ ଝଅଟ କାଠ ଦିଅ । ଇସ୍କୁଲ ଘଣ୍ଟା ବାଜିଲାଣି ।

ମାଗୁଣି ରହ, ଏମିତି ଉଛନ୍ନ କାହିଁକି ହଉଚୁ ? ଆମ ଗୁହାଳ ସଙ୍ଗାରେ ଗୋଟେ ଭଙ୍ଗା ନେଥେରୀ ପଡିଚି, ସେଇଟାକୁ କୁରାଡୀରେ ଚରିଦେବି ନବୁ ।

ଗଦେଇ ମାଗୁଣି ଭାଇ ! ମୁଁ ଯାଉଚି । ବାଛୁରୀଟା କୁଆଡେ ଗଲା ଦେଖେ । (ପ୍ରସ୍ଥାନ)

ପଞ୍ଚୁଆ ଜେଜେ, ଚାଲ ମତେ କାଠ ଦବ ।

ମାଗୁଣି ହଉ ଚାଲ । (ଦୁହେଁ ଆଗ ପଛ ହୋଇ ଗୁହାଳ ଆଡେ ଗଲେ)



ଆନଂଦ ଚଂଦ୍ର ପହି

# ଚତୁର୍ଥ ଦୃଶ୍ୟ

(ମାଗୁଣିର ଘର । ସମୟ ଅପରାହ୍ନ । କନକ ଗୋଟେ ପାନିଆଁରେ ମୁଣ୍ଡ କୁଣ୍ଡୋଉଛି । ତା ଆଗରେ ଗୋଟେ ଦର୍ପଣ ଥୁଆ ହୋଇଛି ।)

ମାଗୁଣି ବୋହୂ !

କନକ (ମୁଣ୍ଡ କୁଣ୍ଡୋଉ କୁଣ୍ଡୋଉ) କ'ଣ ବାପା ?

ମାଗୁଣି ଦିନ ଆସି ଏତେ ହେଲାଣି, ନିଧିଆ ଏଯାଏଁ ନିଦରୁ ଉଠି ନେଇଁ ?

କନକ ସିଏ ରାତି ଅନିଦ୍ରା ହେଇଚନ୍ତି । ସକାଳୁ ସକାଳୁ ଆସି ପହଞ୍ଚିଲେ ପଖାଳ ଦିଇଟା ଖାଇକି ଶୋଇଚନ୍ତି । ମୁଁ ଦିଇଥର ଉଠେଇକି ଆଇଲିଣି । ଉଠୁ ନାହାଁନ୍ତି ।

ମାଗୁଣି କାଠତ ଆଣି ନେଇଁ...

କନକ ପୁଲିସି ଗୋଡେଇଲେ, କାଠକୁ ବଣରେ ଫିଟେଇ ଦେଇ ଆଇଚନ୍ତି ।

ମାଗୁଣି ମୁଁ କ'ଣ ଗାଆଁ ଭିତରୁ ଏମିତି ଶୁଣୁଚି ।

କନକ କ'ଣ ଶୁଣୁଚ ?

ମାଗୁଣି ଆମ ଗାଆଁର ମନୁଆ ଘଡେଇ ପୁଅ ଚଇତାକୁ କୁଆଡେ ପୁଲିସି ଗୁଳିମାରି ଦେଲେ । ସିଏ ସେଇ ବଣରେ ମରିଗଲା । ଆଉ ଆମ ଟୋକାଏ କାଠ ବୋଝେଇ ଶଗଡରୁ ଦଉଡି ହାଣି ଦେଇ ଖାଲି ଶଗଡ ଧରିକି କିଏ କୋଉବାଟେ ଉଧୁଳିକି ଆଇଚନ୍ତି ।

କନକ ଚଇତା ମରିଗଲା ? ହେ ମାଆ ! ଏଇଲେ କ'ଣ ହବ ?

ମାଗୁଣି ପୁଲିସି ଆସିକି ଘରେ ଘରେ ପଶି ଆମ ଗାଆଁର କାଠ ଚୋରଙ୍କୁ ବାନ୍ଧିବ ।

କନକ ମୋ ଦିହ ହାତ ଥରୁଚି । କ'ଣ କରିବି ମତେ ବୁଦ୍ଧିବାଟ ଦୁଶୁ

ନେଇଁ ।

ମାଗୁଣି — ମୁଁ ନାହିଁ କରୁଚି ସେ ବଦନାମି କାମରେ ମାତନା, ଚାଷବାସ କର, ମୋ କଥା କ'ଣ ସିଏ ଶୁଣିଲା ।

କନକ — ସେ କଥା ଏଇନେ କହି ଲାଭ କ'ଣ ? ଏଇନେ କ'ଣ କରିବା ?

ମାଗୁଣି — ତାକୁ ଉଠା । ସେ ଭାଗବତ ଘରକୁ ଯାଉ । ସେଇଠି ସବୁ ଶଗଡିଆ ଏକାଠି ହେଇଚନ୍ତି ।

କନକ — ଏକାଠି ହେଇ କ'ଣ କରୁଚନ୍ତି ?

ମାଗୁଣି — ଚଇତାର ଶବଟାକୁ ପୁଲିସିବାଲା ନେଇ ଯାଇଚନ୍ତି । ସେଇଟା କେମିତି ଆସିବ ଆଉ ଏମାନଙ୍କୁ ସବୁ କେମିତି ଆଗୁଆ ଜାମିନି ମିଳିବ ସେଇ କଥା ବିଚାର କରୁଚନ୍ତି । ତୁ ନିଧିଆକୁ ଉଠା ।

ନିଧିଆ — (ଆଖି ମଳି ମଳି ହାଇ ମାରି ଆସିଚି)

ମାଗୁଣି — ହେଇତ ନିଧିଆ ଉଠାଲାଣି ।

ନିଧିଆ — କ'ଣ ହେଲା ?

ମାଗୁଣି — କାଲି କୁଆଡେ ପୁଲିସି ବାଲା ଚଇତାକୁ ବଣରେ ମାରି ଦେଲେ ?

ନିଧିଆ — ଚଇତା ଅତି ନିର୍ବୁଦ୍ଧିଆ କାମ କଲା ତାକୁ ମାରିବେ ନେଇଁ ?

ମାଗୁଣି — କ'ଣ କଲା ?

ନିଧିଆ — ଆମେ ସମସ୍ତେ ଶଗଡରେ କାଠ ବାନ୍ଧି ସାରିଥିଲୁ, ବଳଦ ଯୋଚିବାକୁ ଯାଉଚୁ ଏଇ ସମୟରେ ପୋଲିସର ଯୋତା ମଚ ମଚ ଶବଦ ଶୁଭିଲା । ଦଉଡିକୁ ହାଣି ଦେଇ କାଠକୁ ଛାଡି ଦେଇ ଖାଲି ଶଗଡ ଧରିକି ଆମେ ପଳେଇ ଆଇଲୁ ।

ମାଗୁଣି : ଚଇତା କ'ଣ କାଠ ଫିଟେଇଲା ନାଇଁ ?

ନିଧିଆ — ସିଏ କାଠ ନଫିଟାଇ ବଳଦ ଯୋଚିକି ଅଡେଇ ଅଡେଇ ଆଣିଲା । ଆମକୁ ବଡ ପାଟିରେ ଡାକିକି କହିଲା - ଏଗୁଡା ଖାଲି ପୁଲିସି । ୟାଙ୍କ ସାଙ୍ଗରେ ମାଜିଷ୍ଟର ନାହିଁ । ଏମାନେ ଆମକୁ ବନ୍ଧୁକ ଦେଖେଇ ଡରେଇବେ, ହେଲେ ଆମକୁ ବନ୍ଧୁକ ମାରିପାରିବେ ନେଇଁ ।

ମାଗୁଣି — ତମ ଭିତରୁ ତା ପାଖକୁ କିଏ ଗଲ କି ?

ନିଧିଆ — ନାଇଁ, ସେତେବେଳକୁ ପୁଲିସିବାଲା ତାକୁ ଚାରିପଟରୁ ଘେରଉ

କରି ନେଲେଣି ।

କନକ ଏଁ, ପୁଲିସି !

ନିଧିଆ ଚଇତା ଆଗରେ କୁରାଢ଼ୀ ବୁଲାଇ ବୁଲାଇ ଚାଲିଥାଏ । ତା ପଛରେ ତା ଶଗଡ । ଏତିକି ବେଳେ ଚଇତାକୁ ଡରେଇବା ପେଇଁ ପୁଲିସିବାଲା ଦି' ଚାରିଟା ଗୁଳି ଶୂନ୍ୟକୁ ଫୁଟେଇ ଦେଲେ । ଚଇତା କହିଲା - ମୁଁ କ'ଣ ଛୁଆ ହେଇଚି ଡରିଯିବି ?

ମାଗୁଣି ଏମାନଙ୍କୁ କୁହନ୍ତି ଡିହା ଗାଲୁଆ ।

ନିଧିଆ : ଚଇତା ଆଡକୁ ପୁଲିସିବାଲା ମାଡି ଆସିଲେ । ପୁଲିସି ଇନିସିପେକ୍ଟର ମୁଣ୍ଡକୁ ହାଣିବା ପାଇଁ ଚଇତା କୁରାଢ଼ୀ ଉଁଚାଇଲା । ଆଉ ଟିକେ ଡେରି ହେଇଥିଲେ ଇନିସିପେକ୍ଟର କାନ୍ଧରୁ ମୁଣ୍ଡଟା ଛିଣ୍ଡି ଅଲଗା ହେଇ ଯାଇଥାଆନ୍ତା ।

କନକ ଏ ମାଆ !

ନିଧିଆ ଏତିକି ବେଳେ ଆଉ ଜଣେ ପୁଲିସି ଚଇତା ପେଟକୁ ବନ୍ଧୁକ ଛୁରୀରେ ଫୁଟେଇ ଦେଲା । ଚଇତା ଛଟପଟ ହେଇ ମରିଗଲା ।

ମାଗୁଣି ତମେ ସବୁ କୋଉଠି ଥାଇ ଏସବୁ ଦେଖୁଥିଲ ?

ନିଧିଆ ଆମେ କିଛି ଦେଖିନଉଁ । ଚଇତାର ହଳିଆ ପୁଲିସିଙ୍କୁ ଦେଖିକି ଡରରେ ଗୋଟେ ବଡ ଗଛରେ ଚଢ଼ିଯାଇଥିଲା । ସିଏ ଗଛ ଉପରେ ଥାଇ ସବୁ ଦେଖିଚି ।

ମାଗୁଣି ଏଇନେ କ'ଣ ହବ ?

ନିଧିଆ ହବ ଆଉ କ'ଣ ? ଏମିତି କାଠ ଚୋରି କେଶ୍ ଆମ ନାଆଁରେ କେତେ ଅଛି, ଇଏ ଆଉ ଗୋଟେ ହେବ । ଏଥର ପୁଣି ଆମେ ଧରାପଡି ନାହୁଁ, ଶଗଡ, ବଳଦ କିଛି ଜବତ ହେଇ ନେଇଁ ।

ମାଗୁଣି ସିଏ ସବୁ ଥିଲା କାଠ ଚୋରି ମକଦ୍ଦମା । ଏଥର ମଣିଷମରା କେଶ୍ ।

ନିଧିଆ କାଇଁକି ? ଆମେ କ'ଣ ଚଇତାକୁ ମାରିଚୁ ?

ମାଗୁଣି ମୁଁ ଗାଆଁ ଭିତରୁ ଶୁଣିକି ଆସିଲି - ସମସ୍ତେ କୁହାକୁହି ହଉଚନ୍ତି ପୁଲିସିବାଲା କୁଆଡେ କହୁଚନ୍ତି ଚଇତାକୁ ସେମାନେ ମାରି ନାହାଁନ୍ତି । ସେଇ କାଠ ଚୋରମାନେ ନିଜ ନିଜ ଭିତରେ ଝଗଡା ଲାଗିକି ହଣା, ମରା ହେଇଚନ୍ତି ।

ନିଧିଆ	ପୁଲିସିବାଲା କାହିଁକି କରବେ ମ ? ଏ ଗାଆଁଲୋକମାନଙ୍କ ବୁଦ୍ଧି ଭଏ ।

(ଏହି ସମୟରେ ଦୂରରୁ ମଟର ଆସିବାର ଶବ୍ଦ ଶୁଭିଲା)

ନିଧିଆ	ଏଇଟା ଗୋଟେ ମଟର ହବ କି କ'ଣ ।

ମାଗୁଣି	ପୁଲିସିବାଲା ଆଇଲେକି ଆଉ ?

କନକ	(କାନ୍ଦି ପକାଇ) ଏ ମାଆ ! ହେ ଭଗବାନ୍ ! କ'ଣ କରିବିଲୋ । ପୁଲିସି କାହିଁକି ଆଇଲା ?

ନିଧିଆ	(ଗାଡି ରହିବା ଶବ୍ଦ) ଏଁ, ଆମ ଘର ଆଗରେ ଗାଡିଟା ରହିଲା ନା କ'ଣ ?

କନକ	(ନିଧିଆ ବାହାରକୁ ଦେଖିବାକୁ ଯିବା ବେଳେ ତାକୁ ଅଟକାଇ) ତମେ ସିଆଡେ କୁଆଡେ ଯାଉଚ ? ଯଦି ପୁଲିସି ହେଇଥିବ ? ନାଇଁ, ତମେ ସେ ଘର ଭିତରେ କୋଉଠି ହେଲେ ନୁଚିଯା ।

ମାଗୁଣି	ତୁ ଯା, ନୁଚୁ । ମୁଁ ଯାଉଚି ଦେଖିବି ।

(କନକ ନିଧିଆକୁ ପେଲିପେଲି ଘର ଭିତରକୁ ନେଇଗଲା । ନିଧିଆ କ'ଣ କରିବ କିଛି ଚିନ୍ତା ନକରି ପାରିବା ଭାବ ତା ମୁହଁରେ)

କନକ	ତମେ ଚାଲିଲ, ଚାଲ ।

(ମାଗୁଣି ବାହାରକୁ ଯିବା ସମୟରେ ଘର ଭିତରକୁ ପଶି ଆସିଲେ ପୋଲିସ୍ ସବ୍‌ଇନିସ୍‌ପେକ୍ଟର । କନକ ଓଢ଼ଣା ପକାଇ ଅଣଆଡିଆ ହେଇ ଠିଆ ହେଲା ।)

ପୋ.ସ.	ଏଇଟା ନିଧି ପ୍ରଧାନଙ୍କ ଘର ?

ମାଗୁଣି	(ହାତ ଯୋଡି ଠିଆ ହୋଇ) ହଜୁର ।

ପୋ.ସ.	ତମେ ନିଧିର କ'ଣ ହେବ ?

ମାଗୁଣି	ଆଜ୍ଞା, ନିଧିଆ ମୋ ପୁଅ ।

ପୋ.ସ.	ତା ନାଆଁରେ ୱାରେଣ୍ଟ ଅଛି । ମୁଁ ତାକୁ ଆରେଷ୍ଟ କରିବି ।

କନକ	ସିଏ ଘରେ ନାହାଁନ୍ତି ।

ପୋ.ସ.	ସିଏ ଘରେ ନାହିଁ ନା ଘରେ ଲୁଚିଚି ?

ମାଗୁଣି	ନାଇଁ ଆଜ୍ଞା....

ପୋ.ସ.	ନାଇଁ ଆଜ୍ଞା କ'ଣ ? ଏ ଗାଆଁ ଲୋକଙ୍କୁ ମୁଁ ହାଡେ ହାଡେ

ଚିହ୍ନେ । ସବୁ ଶଳା ଚୋର । କିଏ ହାଣ୍ଡିଶାଳରେ ଲୁଚିଚିତ କିଏ ଭାଡି ତଳେ ପଶୁଚି ।

କନକ ନାଇଁ ଆଜ୍ଞା.... ଇଏ ଘରେ ନାହାଁନ୍ତି । ଦି ଦିନ ହେଲା ବନ୍ଧୁଘର ଯାଇଚନ୍ତି ।

ପୋ.ସ. ଘରେ ନାହିଁତ ?

କନକ ନା । ନାହାଁନ୍ତି ।

ପୋ.ସ. ହଉ ଠିକ୍ ଅଛି । ମଧୁଆ ଘରେ ପଶି ଦେଖତ୍ ।

କନେଷ୍ଟବଲ : ହଜୁର । (ଘର ଭିତରକୁ ପଶିବାକୁ ଯିବା ବେଳେ ମାଗୁଣି ବାଧା ଦେଇଛି ।)

ମାଗୁଣି ଆମେ ଗରିବ ହେଲୁ ବୋଲି ତମେ ଆପଣ ଆମ ବୋହୂ ଭୁଆଷୁଣୀ ନମାନି ଘରେ ପଶିବ ?

ପୋ.ସ. ତମେ ତମ ବୋହୂକୁ ଧରି ଚୁପ୍‌ଚାପ୍ ବାହାରେ ଠିଆ ହୁଅ । ନହେଲେ ତା ସାଙ୍ଗରେ ତମକୁ ବାନ୍ଧିନେବି ।
(ଏ କଥା ଶୁଣିବା ମାତ୍ରେ ନିଧିଆ ଭିତରୁ ବାହାରି ଆସିଚି)

ନିଧିଆ ସେମାନଙ୍କ ଦେହରେ ହାତ ଦବା ଦରକାର ନାହିଁ ।

ପୋ.ସ. ଶଳା ମୋ ସାଙ୍ଗରେ ଥଟା ଖେଳୁଚି । ଏତେ କଲିଜାବାଲାତ ମାଇପ କାନିତଳେ ଲୁଚୁଥିଲୁ କାହିଁକି ? ମଧୁଆ !

କନେଷ୍ଟବଲ : ସାର୍ ।

ପୋ.ସ. ପକା ହ୍ୟାଣ୍ଡକପ୍ ।
(କନେଷ୍ଟବଲ୍ ନିଧିଆ ହାତରେ ହ୍ୟାଣ୍ଡକପ୍ ପିନ୍ଧାଇଲା । ନିଧିଆ ଟିକେ ଏପଟ ସେପଟ ହେଲା)

ପୋ.ସ. ଚୁପ୍ ଚାପ୍ ହାତ ଦେଖା, ନହେଲେ ଦେଖୁଚୁନା ଏଇଥିରେ ଗେବି ଦେବି ।

କନକ ନାଇଁ ତାଙ୍କୁ ମାରନା । ସିଏ କାଲିଠୁ କିଛି ଖାଇ ନାହାଁନ୍ତି ।

ପୋ.ସ. ନାଇଁ ମାରିବି କାଇଁକି ? ଥାନାରେ ପହଞ୍ଚିଲେ ପୂଜା କରିବି ।
(କନେଷ୍ଟବଲ ନିଧିଆକୁ ହ୍ୟାଣ୍ଡକପ୍ ପକାଇ ଟାଣି ଟାଣି ନେଲା । ନିଧିଆ କାନ୍ଦ କାନ୍ଦ ହୋଇ ପଛକୁ ମୁହଁ ବୁଲେଇ ସ୍ତ୍ରୀ ଓ ବାପାକୁ ଅନାଇଲା । କନକ ବଡ ପାଟିରେ କାନ୍ଦି ଉଠିଲା ।)

ମାଗୁଣି ତୁ ଯାଆ ! ମୁଁ ପଛରେ ଯାଇ ପହଞ୍ଚିବି ।

( ନିଧିଆକୁ ପୋଲିସି ଟାଣି ଟାଣି ନେଇଗଲା । କନକ କାନ୍ଦୁଥିଲା ଓ ମାଗୁଣି ତାକୁ ସାନ୍ତ୍ୱନା ଦେଉଥିଲା ।)

ମାଗୁଣି — ତୁ ବେସ୍ତ ହୋନା ମାଆ ! ଇଏ ଆମ କର୍ମ ଫଳ । ହେଲେ ତୁ ଡରନା ମାଆ, ମୁଁ ବଞ୍ଚିଚି ।

( ଆଉ କଣ କହିବ କହିବ ହେଉଥିଲା କିନ୍ତୁ କୋହ ଉଠିଲା, କିଛି କହିପାରିଲା ନାହିଁ ।)



ଆନଂଦ ଚଂଦ୍ର ପହି

# ପଞ୍ଚମ ଦୃଶ୍ୟ

(ନିଧିଆ ଘର । କନକ ମୁହଁ ଶୁଖାଇ ବସିଛି । ତା ପାଖରେ ପଞ୍ଚୁଆ ଗୋଡ କଚାଡି କାନ୍ଦୁଛି । ଲୁଗା ଧରି ଟାଣୁଛି । ଖାଇବାକୁ ଦେବାକୁ ଅଳି କରୁଛି ।)

ପଞ୍ଚୁଆ — ବୋଉ ! ଏ ବୋଉ ! ମତେ ଭୋକ ହେଲାଣି, କ'ଣ ଖାଇବାକୁ ଦେ ।

କନକ — କାଲିଠୁ ଚୁଲି ଜଳିନେଇଁ, ତତେ ଆଉ କ'ଣ ଖାଇବାକୁ ଦେବି ?

ପଞ୍ଚୁଆ — ଭାତ କାଇଁକି ରାନ୍ଧିଲୁ ନଉଁ ?

କନକ — ତୁ ଏଡେ ପୁଅଟେ ହେଲୁଣୁ, ଭଲମନ୍ଦ କିଛି ବୁଝି ପାରୁନଉଁ ? ଘର ବୁଡି ପାଣି ଆଣ୍ଠୁଏ ହେଲାଣି ପୁଅର ଚେତା ପଶୁ ନେଇଁ । (କାନ୍ଦ କାନ୍ଦ ହେଲା) /

ପଞ୍ଚୁଆ — କ'ଣ ହେଇଚି ? ତୁ ଏମିତି କାନ୍ଦୁଚୁ କାଇଁକି ?

କନକ — ତୋ ବାପା ପରା କାଲିଠୁ ବନ୍ଧାହେଇ ସପନପୁର ଥାନାକୁ ଯାଇଚନ୍ତି ।

ପଞ୍ଚୁଆ — ତାଙ୍କୁ ଆଣିବା ପେଇଁ ଜେଜେ ବାପା ପରା ଯାଇଚନ୍ତି, ତୁ ଏମିତି ଛାନିଆଁ ହଉଚୁ କାଇଁକି ?

କନକ — ଜେଜେବାପା କାଲିଠୁ ଗଲେଣି ଯେ ତାଙ୍କର କିଛି ଖୋଜ ଖବର ନାହିଁ । ତୁ ଟିକେ ଗାଆଁ ଭିତରକୁ ଯା, ପଚାରି ଆସିବୁ ଆଉ କିଏ ଆଇଲାଣି କି ?

ପଞ୍ଚୁଆ — ମୁଁ କାହାକୁ ପଚାରିବି ?

କନକ — ଗନ୍ଧିଆଦାଦା ଘରକୁ ଯା । ଗନ୍ଧିଆଦାଦା ଆଇଲେଣି ନା ନାହିଁ ପଚାରି ଆସିବୁ ।

ମହନି — (ବାହାରୁ ଡାକିଲା) ଆରେ ପଞ୍ଚୁଆ । ତୋ ବାପା ଥାନାରୁ ଆଇଲାଣି ?

କନକ ଆସ, ମହନି, ଭିତରକୁ ଆସ ।

ମହନି (ପ୍ରବେଶି) ମାରୁଣି ବଡପା ପରା ନିଧିଆରକି ଜାମିନିରେ ଆଣିବାକୁ ଯାଇଥିଲେ ? କ'ଣ ଏଯାଏଁ ନେଉଟି ନାହାଁନ୍ତି ?

କନକ ନାଇଁ, ଆସି ନାହାଁନ୍ତି । (ସପଖଣ୍ଡେ ବିଛେଇ ଦେଲା) ବସ ।

ମହନି (ବସୁ ବସୁ) ନବଘନ କାଲି ଥାନାରୁ ଆଇଲା । ସିଏ କହୁଥିଲା...

କନକ (ପାଟିରୁ କଥା ଛଡାଇ) କ'ଣ କହୁଥିଲେ ?

ମହନି ଥାନାବାବୁ କୁଆଡେ ଅଡିବସିଲା, ଏଇଟା କାଠ ଚୋରି ମକଦ୍ଦମା ନୁହଁ, ଏଥିରେ ମର୍ଡର କେଶ୍ ମିଶିଚି । କାହାରିକି ଜାମିନି ଦେଇ ହବ ନେଇଁ ।

ପଞ୍ଚୁଆ ମୋ ବାପା କୋଉ ଦିନ ଆସିବେ ମୋହନି ଦାଦା ?

ମହନି ଆଜି ଆସିବେ ।

ପଞ୍ଚୁଆ ବୋଉ ! ମୁଁ ତା'ହେଲେ ଗଡାଣିତଳ ବରଗଛ ମୂଳକୁ ଯାଉଚି ସେଠି ବସିଥିବି । ବାପା ହେରିକା ଆଇଲେ ତାଙ୍କ ସାଙ୍ଗରେ ଆସିବି । (କନକର ଉତ୍ତରକୁ ଅପେକ୍ଷା ନକରି ପଞ୍ଚୁଆ ଧାଇଁ ଧାଇଁ ପଳାଇଲା)

କନକ ପଞ୍ଚୁଆ ! ଏ ପଞ୍ଚୁଆ ! ଆରେ ସିଏ କେତେବେଳେ ନାଇଁ କେତେବେଳେ ଆସିବେ, ତୁ ସେଠି ଭୋକ ଓପାସରେ କେତେ ବେଳଯାଏଁ ବସିବୁ ?

ମହନି ସିଏ କ'ଣ ଆଉ ଅଛି ଯେ ତମ କଥା ଶୁଣିବ ?

କନକ ତମ ଭାଇ ଆଜି ଆସିବେ ବୋଲି କେମିତି କହୁଚ ? ଥାନାବାବୁ ପରା ଜାମିନି ଦବାକୁ ଅମଙ୍ଗ ହଉଥିଲେ ?

'ନି ହଁ । କିନ୍ତୁ ଆମ ଗାଁ ଲୋକମାନେ ଯାଇଁ ଥାନା ଆଗରେ ବସିଲେ ଥାନାବାବୁ ରାଜି ନହୋଇ ଯିବେ କୁଆଡେ ? ଆଜି ସକାଳେ ଜାମିନି ହେଇଥିବ । ସେମାନେ ସବୁ ଆଜି ଆସିବେ । କାଲିଠୁ ଆମ ଘରେ ଚୁଲି ଜଳି ନେଇଁ । 'ଆଁରେ କାହାରି ଘରେ ଖିଆ ପିଆ ନାହିଁ । ମାନେ ଗଲା ବେଳଠୁ ମୁଁ ଖାଲି ଏଠୁ, ସେଠିକି, ଘରୁ ' ହଉଚି । ମୋ ବାହାଘର ମୁଦିଟା କଣ୍ଠ ପରିଡା ଘରେ

ଆନନ୍ଦ ଚନ୍ଦ୍ର ପହି

ବନ୍ଧା ପକେଇ ଦି'ଶ ଟଙ୍କା ନେଇକି ବାପା ଯାଇଚନ୍ତି ଥାନାକୁ ।

ମହନି ତମେ ଜାଣିଚ ନା ଭାଉଜ ? ଏ ସବୁ ଆମ ଗାଆଁର ହଟ ମାହାନ୍ତିର କାଣ୍ଡ । ପୁଲିସିରେ ଖବର ଦେଇକି ସିଏ ଏତକ କରେଇଚି ।

କନକ : କାଇଁକି ? ତାଙ୍କର ଏଥିରେ କି ଲାଭ ?

ମହନି ଏ ଗାଆଁରେ ଶାଗ ଖିଆକୁ ପେଜ ଖିଆ ଦେଖିପାରେ ନେଇଁ । ରାତିକେ ଗାଡିଏ ଲେଖା କାଠ ଆଣି ପାଞ୍ଚଶ, ଛଅଶ ଟଙ୍କାରେ ବିକିବାରୁ ଏମାନଙ୍କ ଦିହ ସହୁ ନେଇଁ ।

କନକ କାହା ବାପା ଗିରେଇଚି ମାଲ୍ କିଏ ଖାଇଯାଉଚି ? ସରକାରୀ ବଣ । ଯାହାର ବଳ ପାଇଲା ସିଏ ଆଣିକି ବିକିଲା, ତାଙ୍କ ମନ କାଇଁକି ସାରୁ ଖାଉଚି ?

ମହନି ବୁଢ଼ା ନାହାକ କହୁଥିଲା ପଅରଦିନ ରାତିରେ ଏମାନେ ଯେମିତି ଶଗଡ ବଳଦ ନେଇକି ବଣକୁ ଗଲେ, ସେମିତି ହଟ ମାହାନ୍ତି ପୁଲିସିର ବଡ ହାକିମ ପାଖକୁ ଗଲା ।

କନକ ସେ ହିଂସିକିଆ ଏଥିରୁ କ'ଣ ପାଇବେ ? କାଇଁକି ତାଙ୍କର ଏତେ ଅହନ୍ତା ? /

ମହନି ତମେ କ'ଣ ହଟ ମହାନ୍ତି କଥା ଜାଣିନା ? ସେଟା ବୃଦ୍ଧ ଟାଉଟର । ସବୁବେଳେ ଖାଲି ପୁଲିସି ଫରଷ୍ଟଙ୍କ ଚାରିପାଖେ ଘେର କାଟୁଚି । ହଉ, ଏକା ମାଘକେ ଶୀତଯାଏ ନେଇଁ, ପୁଲିସି ଫରଷ୍ଟର କ'ଣ କରିବେ ନା, ହଟ ମହାନ୍ତି କ'ଣ କରିବ ? ଆମେ ସଁ ଦିନରୁ ବଣ କାଠ ବିକି ଚଳୁଚୁ, ଚଳିବୁ । ଇଏ କୋଉ ନୂଆ ମକଦ୍ଦମା ହେଇଚି ? ଏମିତି କେତେ ମକଦ୍ଦମା ଗଲାଣି, କିଏ ସେ ମକଦ୍ଦମାକୁ ଡରିଚି ?

କନକ ତମେ କ'ଣ ଏଥର ବଣକୁ ଯାଇ ନଥିଲ ?

ମହନି ମୁଁ ଦିଦିନ ହେଲା ଗାଆଁରେ ନଥିଲି । ମୋ ସାବିନାନୀକୁ ଆଣ୍ଠୁଗଣ୍ଠି ବାତ ଧରିଚି । ବିଚେରା ଭାରି କଷ୍ଟ ପାଉଚି । ତାକୁ ଦେଖିବାକୁ ତା ଶାଶୁଘରକୁ ଯାଇଥିଲି । କାଲି ଓପର ଓଳି ଆସି ଦେଖିଲି ଆମ ଗାଆଁ ବରଗଛ ମୂଳେ ପୁଲିସି ଗାଡି ଥୁଆ ହେଇଚି । ମନକୁ ପାପ ଛୁଇଁଲା । ବୁଝୁ ବୁଝୁ ଜଣନା

ପୁଲିସି ଆଇଚନ୍ତି ଆମ ଗାଆଁ ଲୋକଙ୍କୁ ବାନ୍ଧି ନେବାକୁ ।

କନକ ଇଏ ପରା ବଣରୁ ଆସି ରାତି ଅନିଦ୍ରା ହୋଇ ଘରେ ଶୋଇଥିଲେ ପୁଲିସି ତାଙ୍କୁ ବିଛଣାରୁ ଉଠେଇକି ନେଇଗଲା । ସିଏ କଣ କିଛି ଖାଇଚନ୍ତି ?

ମହନି ଏଥର ଥାନାବାବୁଟା କାହାରି କଥା ଶୁଣିଲା ନେଇଁ । ସପନା କଥା ଜାଣିଚ ?

କନକ ସପନା ? କୋଉ ସପନା ?

ମହନି କୁମ୍ଭ ଦାସ ପୁଅ ସପନା । ଯାହା ଆଖିରେ ଫୁଲା ପଡିଚି ।

କନକ ତାର କ'ଣ ହେଲା ?

ମହନି ସପନା ଗୋଟେ କରିଆ ପିନ୍ଧିକି ଦାଣ୍ଡରେ ଠିଆ ହେଇ ଗୁଡାଖୁ ଘସୁଥିଲା । ପୁଲିସି ତାକୁ ସେଇ ଦାଣ୍ଡରୁ ଦାଣ୍ଡରୁ ବାନ୍ଧିନେଲେ । ଲୁଙ୍ଗିଟେ ବଦଳେଇବାକୁ ଛାଡିଲେ ନେଇଁ ।

କନକ ସପନା କ'ଣ ସେଇ କରିଆ ପିନ୍ଧି....

ମହନି ଆଉ କ'ଣ କରିବ ? ତା' ବାପା ଲୁଙ୍ଗି, ଗେଞ୍ଜି ନେଇକି ତା ପଛେ ପଛେ ଥାନାକୁ ଗଲେ । ଥାନାରେ ସିଏ ଲୁଙ୍ଗି ବଦଳେଇଲା, ଗେଞ୍ଜି ପିନ୍ଧିଲା । ହଉ ଭାଉଜ ! ମୁଁ ଯାଉଚି, ଗନ୍ଧିଆ ଘରକୁ ଯିବି । ଗନ୍ଧିଆ ମାଆ ଆମ ଠାକୁରି ହାତରେ ଖବର ଦେଇଥିଲେ ।

କନକ ହଁ, ତମେ ଯା, ସିଏ ଗନ୍ଧିଆ କଥା ଶୁଣିବାକୁ ଅନେଇଁଥିବେ ।

ମହନି ମୁଁ ଯାଉଚି । ନିଧିଆଇ ଆଇଲେ ମୁଁ ପୁଣି ଆସିବି ।
(ମହନିର ପ୍ରସ୍ଥାନ)



ଆନନ୍ଦ ଚନ୍ଦ୍ର ପତି

## ଷଷ୍ଠ ଦୃଶ୍ୟ

(ମାଗୁଣିର ଘର । ସମୟ - ରାତି । ପିଣ୍ଡାରେ ବସିଛି ମାଗୁଣି । ଆଗରେ ଲଣ୍ଠନ ଥୋଇ ଭାଗବତ ପଢୁଛି ।)

ମାଗୁଣି ଯା ଅବା ଯେତେବେଳେ ହୁଏ,
ଗୋରୁଙ୍କ ପରି ସବୁ ସହେ ।
ଅଦୃଷ୍ଟମାନି କହେ କଥା
କେ ଅଛି ଦୁଃଖ, ସୁଖ ଦାତା ।
ଯେ ପ୍ରାଣୀ ଆତ୍ମାକୁ ନଜାଣେ
ସେ ମିତ୍ର ଅରି ପରିମାଣେ ।
ଆପଣା ହସ୍ତେ ଜିହ୍ୱା ଛେଦି
କେ'ତାର ଅଛି ପ୍ରତିବାଦୀ ।
ମାୟା ସଂସାରେ ଜ୍ଞାନ ହରି
ଜୀବକୁ ଯିବ ହିଂସା କରି ।
ସ୍ୱଭାବେ ଜୀବ ନିର୍ବିକାର
ଦୋଷ ଅଦୋଷ ନାହିଁତାର ।

(ଏହି ସମୟରେ ଆସିଛନ୍ତି ଦୋଳିଆ, ସପନା । ହାତରେ କାଗଜ ପେନସିଲ ।)

ଦୋଳିଆ ନିଧିଆଇ ଘରେ ନାହିଁ କି ?

ମାଗୁଣି (ଭାଗବତ ପଢ଼ା ବନ୍ଦ କରି ଲଣ୍ଠନ ଟେକି ଚିହ୍ନିଲେ) କିଏ ଦୋଳିଆ, ଆରେ ସେକଡକୁ ଆଉ କିଏ ?

ଦୋଳିଆ : ସେମାନେ ସପନା, ଗନ୍ଧିଆ ଆଉ ମହନି ।

ମାଗୁଣି ଆରେ, ତମେ ସବୁ ଏତେ ରାତିରେ କୁଆଡେ ?

ଦୋଳିଆ : ନିଧିଆଇ କୁଆଡେ ଗଲା ?

ମାଗୁଣି ଶୋଇଲାଣି ନା କ'ଣ ? ଆଲୋ ଏ ବୋହୂ ! ବୋହୂ !

କନକ (ଘର ଭିତରୁ) କ'ଣ ବାପା ? (ପ୍ରବେଶି)

ମାଗୁଣି ନିଧିଆକୁ ଡାକିଲୁ, ଏଇ ଆମ ଦୋଳିଆ ଆଉ ସପନା ହେରିକା ଖୋଜୁଚନ୍ତି ।

କନକ ଡାକୁଚି । (ପ୍ରସ୍ଥାନ)

ମାଗୁଣି କିରେ ପୁଅ, ଏତେ ରାତିରେ ନିଧିଆ ଠେଇଁ କି କାମ ?

ଦୋଳିଆ ସେଇ କାଠ କେଶ୍ ପେଇଁ ଆଇଥିଲୁ ।

ମାଗୁଣି କୋଉ କେଶ ?

ସପନା ସେଇ ଚଇତା ମର୍ଡର କେଶ୍ । କାଲି ତାରିକ ଅଛି ।

ମାଗୁଣି ହେଇ ନିଧିଆ ଆଇଲାଣି ।

(ନିଧିଆ ଆଖି ମଳି ମଳି ଘର ଭିତରୁ ପଦାକୁ ଆସିଲା । ମାଗୁଣି ଭାଗବତ ବହି ଓ ପିଢ଼ା ନେଇ ଘର ଭିତରକୁ ଗଲା ।)

ଦୋଳିଆ : କ'ଣ, ନିଦ ହେଇଯାଇଥିଲା ?

ନିଧିଆ (ହାଇମାରି) ମସ୍ତବଡ ଭାତ ନିଦଟା ଭାଙ୍ଗିଦେଲ । (ଅମସ୍ତେ ପିଣ୍ଡା ଉପରେ ବସିଗଲେ) କିରେ ତମେ ସବୁ ଏତେ ରାତିରେ କୁଆଡେ ?

ଦୋଳିଆ କାଲି ମକଦ୍ଦମା ତାରିକ କଥା ତୋର କ'ଣ ହେଜ ନାହିଁ ?

ନିଧିଆ କାଲି ?

ଗନ୍ଧିଆ ହଁ, କାଲି ।

ସପନା ଓକିଲ କଇଚି ସିଏ ଏଇ ତାରିକରେ ଦିହଜାରେ ଟଙ୍କା ନବ ।

ନିଧିଆ ଏତେ ଟଙ୍କା କ'ଣ ? ଓକିଲ ଚିଲ ଶାଗୁଣା ମିନ୍ତି ପଲ ପଲ ହଉଚନ୍ତି, ତାର ପୁଣି ଏତେ ଭାଉ ?

ସପନା ଚାରି ହଜାର ଟଙ୍କା ହାଙ୍କୁଥିଲା, ରାମନା କେତେ କୁହାବୋଲା କରିବାରୁ ଦି ହଜାର ଟଙ୍କାରେ କଥା ଛିଡିଚି ।

ନିଧିଆ ଫିଇ ତାରିକକୁ ସିଏ କ'ଣ ଏମିତି ଦି'ହଜାର ଟଙ୍କା ନବ ?

ଦୋଳିଆ : ନାଇଁ, ନାଇଁ ଏଇ ପହିଲୁ ତାରିକଟା ଦି ହଜାର ନବ । ତେଣିକି ଫି ତାରିକକୁ ୧୦୦ ଟଙ୍କା ନେଖାଁ ନବ । ମକଦ୍ଦମା ଯଇଲେ ବାକି ଚାରିହଜାର ଟଙ୍କା ନବ ।

ମହନି ତୁମେ ସବୁ ଯାହା କୁହ, ହଟ ମାହାନ୍ତିକି ପାନେ ନଦେଲେ [illegible] ନେଇଁ । ସେ ଶଳା ସବୁ ଖବର ପୁଲିସି କି ଆଉ ଫରଷ୍ଟରକୁ

ଦେଇକି ଆମକୁ ଧରଉଚି ।

ସପନା ହଟିଆ ଜଇଁପୁଅ ମିନ୍ତି ପୁଲିସି ଗାଡିରେ ବସିକି ବୁଲୁଚି, କିଏ କୋଉଠି କାଠ ପକେଇଚି, କିଏ କୋଉଦିନ କେତେବେଳେ ବଣକୁ ଯାଉଚି, ସବୁ ନେଇ ପୁଲିସି ଫରଷ୍ଟରଙ୍କ କାନରେ ଫୋଡୁଚି ।

ମହନି ଶଳାର ହାତଗୋଡ ହାଣିକି ଗାଆଁ ଦାଣ୍ଡରେ ଗଡେଇ ଦବା । ଗୋଡ ହାତ ଥିବ ଯେ ପୁଲିସି ଫରଷ୍ଟରଙ୍କ ପଛରେ ଗୋଡେଇବ ।

ନିଧିଆ ନାଇଁ, ନାଇଁ ସେଥିରେ ଏଇନେ ମୁଣ୍ଡ ପୂରାନା । ହଟିଆ କ'ଣ ଆମକୁ ବଳେଇଯିବ ? ଏଇନେ ତାକୁ ମାର୍‌ଧର କଲେ ମହା ବିପଦ । ଚଇତା ମର୍ଡର କେଶ୍‌ଟା ଫଇସଲା ହେଉଯାଉ, ତା କଥା ବୁଝିବା । ବେଳ କ'ଣ କୁଆଡେ ପଳଉଚି ? ହଁ, ତମେ କାଲି ତାରିକ ପେଇଁ କେତେ ଟଙ୍କା ଆଦାୟ କଲଣି ?

ସପନା ମୋଟ ପାଆଁଶ ଟଙ୍କା ହେଇଚି ।

ନିଧିଆ ରାତି ଆସି ଏତେ ହେଲାଣି, ଗାଆଁଲୋକ ଯିଏ ଯୁଆଡେ ଖାଇପିଇ ଶୋଇଲେଣି ଆଉ କେତେବେଳେ ଆଦାୟ କରିବା ?

ଦୋଳିଆ ଯାହା ହେଲେବି ଆଜି ରାତି ରାତି ସବୁଟଙ୍କା ରାମନା ନେଇକି ଯିବ ।

ମହନି ତୁ ଟିକେ ଆମ ସାଙ୍ଗେରେ ଆ ନିଧିଆଇ ।

ନିଧିଆ (ପୁଣି ହାଇମାରି )ମତେ ଭାରି ଅସକତିଆ ନାଗୁଚି ।

ସପନା ତୁ ଏମିତି କାନ୍ଧରୁ ଜୁଆଳି କାଢ଼ିଲେ କେମିତି ହବ ? ତୋଭାଗ ଶହେ ଟଙ୍କା ଆଣ, ଆଉ ତୁ ଆମ ସାଙ୍ଗେରେ ଆ ।

ନିଧିଆ ହଉ, ତୁମେ ତା ହେଲେ ବସଟିକେ ମୁଁ ଟଙ୍କା ଆଣିକି ଆସୁଚି । (ଭିତରକୁ ଗଲା)

ଦୋଳିଆ : ଆର ମକଦ୍ଦମା ତାରିକଟା କେବେ ?

ସପନା ଆଉ କୋଉ ମକଦ୍ଦମା ?

ଦୋଳିଆ : ଶାଗୁଆନ କାଠ ମକଦ୍ଦମା ।

ମହନି ଓଃ, ସେଇଟା ତ....

ଦୋଳିଆ : ହଁ ସେଇଟା ।

ଆନଂଦ ଚଂଦ୍ର ପହି

ମହନି   ସେଇଟା ଏମାସ ଆଗିଲା ଗୁରୁବାର ଦିନ । ସେଥିପାଇଁ ପୁଣି କ'ଣ ଟଙ୍କା ଭେଦା କରିବାକୁ ପଡିବ ନା କ'ଣ ?

ଗନ୍ଧିଆ   ପଡିବ ନେଇଁ ? କିରେ ଓକିଲ କ'ଣ ତମ ପେଇଁ ମୋଫତ ନଢ଼ିବ ?

ସପନା   ତାହେଲେ ଏକାଥରକେ ଆଦାୟ କଲ ନେଇଁ ? ପୁଣି ଥରେ କିଏ ନିକମା ହେଇ ମାରିବ ?

ଦୋଳିଆ :   ନିଧିଆଇ !

ନିଧିଆ   (ଘର ଭିତରୁ) ହଁ, ଯାଉଚି, ଯାଉଚି ।

ସପାନ   ଝଅଟ ଆସ, ଆହୁରି କେତେ ଘର ଯିବାକୁ ପଡିବ ।

ନିଧିଆ   (ଆସିଲା) ନା, ଟଙ୍କା ନାହିଁ ।

ଦୋଳିଆ :   ଟଙ୍କାତ ନାହିଁ, ଏତେବେଳେଯାଏଁ କ'ଣ କରୁଥିଲୁ ?

ନିଧିଆ   ପେଡି, ପେଟରା, ଠଣା, ସବୁ ଝଡାଝଡି କରି ଟଙ୍କା ଦଶଟାବି ପୂରିଲା ନେଇଁ ।

ଗନ୍ଧିଆ   ପୁଣି କ'ଣ ହବ ?

ନିଧିଆ   ହବ ଆଉ କ'ଣ ? ଯୋଉଠୁ ହେଲେ ଆଣିକି ଦବାକୁ ପଡିବ । ତମେ ଚାଲ, ଆଉ କାହାଘରୁ ଆଦାୟ କରିବା ଭିତରେ ମୁଁ ଧନୀ ସାମଲ ଘରୁ ଟଙ୍କା ଆଣିକି ଦଉଚି ।

ଦୋଳିଆ :   ଗାମୁଛାରେ ସେଇଟା କ'ଣ ?

ନିଧିଆ   ତୋ ନୂଆଉର ଗୋଠ ।

ଦୋଳିଆ :   ସେଟା କ'ଣ ହବ ?

ନିଧିଆ   ଧନୀ ସାମଲ କ'ଣ ମୋ ମୁହଁକୁ ଦେଖି ଟଙ୍କା ଦବ ?

ଗନ୍ଧିଆ   ରାତିଟାରେ ନୂଆଉ ଅଣ୍ଟାରୁ ଗୋଠଟା ଓହ୍ଲେଇ ଆଣିଲ, ଏଟା ମୋଟେ ଭଲ କଥା ହେଲା ନେଇଁ ।

ନିଧିଆ   ଆରେ ରାତି କ'ଣ ନା ଦିନ କ'ଣ ? ଅଭାବ ଅସୁବିଧା କ'ଣ ଦିନରାତି ସବୁର କରେ ? ଚାଲ ଆଉ ଡେରି କରନା । (ସମସ୍ତେ ନିଧିଆର କାନ୍ଦ କାନ୍ଦ ମୁହଁକୁ ବଲ ବଲକି ଚାହିଁଲେ । କାନ୍ଦ କାନ୍ଦ ମୁହଁରେ ଘର ଦୁଆର ମୁହଁରେ ଠିଆ ହୋଇଥାଏ କନକ ।)

ଦୋଳିଆ :   ନୂଆଉକୁ ଏ ଗୋଠଟା ଭାରିମାନେ । ଗୋଠଟା ଫେରେ

ଦେଇକି ଆଉ ଗୋଟେ କଣ ଆଣ ।
(କନକ ଆଖିରୁ ଲୁହ ପୋଛି ଘର ଭିତରକୁ ଚାଲିଗଲା)

ନିଧିଆ ସବୁତ ବିକା ସରିଲାଣି, ଆଉ କ'ଣ ଅଛି ଯେ ଆଣିବି ? ଚାଲ ବେଶି ରାତି ହେଲେ ସମସ୍ତେ ଶୋଇ ଶାଇ ପଡ଼ିବେ ।

ଗନ୍ଧିଆ ନିଧିଆଇ !

ଗନ୍ଧିଆ ଏଇ.... (ଥତମତ୍ ହୋଇ) କଥା କ'ଣକି.... ଏଇ ରାମନା କହୁଥିଲେ....

ନିଧିଆ ରାମନା କ'ଣ କହୁଥିଲେ ?

ଗନ୍ଧିଆ ଥାନାରେ ତମ ନାଆଁରେ ଆଉ ଗୋଟେ କାଠ ଚୋରି କେଶ୍‌ର ଓ୍ୱାରେଣ୍ଟ ଅଛି ।

ନିଧିଆ (ଚମକି ପଡ଼ି) ଓ୍ୱାରେଣ୍ଟ ?

ସପନା ସେ କେଶ୍‌ଟା କ'ଣ ଏକୁଟିଆ ନିଧିଆଇ ନାଆଁରେ ଅଛି ?

ଗନ୍ଧିଆ ରାମନା କହୁଥିଲା - ଏକୁଟିଆ ନିଧିଆଇ ନାଆଁରେ ଅଛି । ଆଗତୁରା ଜାମିନି ନଆଣିଲେ ପୁଣି କେତେବେଳେ ଦାରୁଗା ରାତି ଅଧିଆ ଘରୁ ବାନ୍ଧିନବ ।

ନିଧିଆ ହଉ (ମନ ଦୁଃଖରେ)

ମହନି ଇଏ କୋଉ କେଶ୍ ନିଧିଆଇ ?

ନିଧିଆ କେତେ କେଶ୍ ଅଛି, କୋଉ କେଶ୍ ବୋଲି କେମିତି କଇବି ?

ଦୋଳିଆ କିଛି ଗୋଟେ ନକଲେ କେତେବେଳେ....

ନିଧିଆ ଦାରୁଗା ବାନ୍ଧିନବ, ଏଇଆତ ? ଆରେ ପାଣିରେ ଘର କରି କୁମ୍ଭୀରକୁ ଡରିଲେ ଚଳିବ ? ଚାଲ, ଚାଲ, ବହୁତ ରାତି ହେଲାଣି ।
(ସମସ୍ତେ ଆଗପଛ ହୋଇ ଚାଲିଗଲେ)



## ସପ୍ତମ ଦୃଶ୍ୟ

(ମାଗୁଣିର ଘର । ମାଗୁଣି କୁଣିଆ ଘରୁ ଫେରିଛି । ହାତରେ ବ୍ୟାଗ, କାଖରେ ଛତା, ପାଦରେ ମୋଟର ଟାୟାର ଚପଲ । ସମୟ ଖରାବେଳ । ମାଗୁଣି ବ୍ୟସ୍ତ ଓ ବିବ୍ରତ ।)

ମାଗୁଣି    ନିଧିଆ ! ନିଧିଆ ! ବୋହୂ ! ଏ ବୋହୂ ! ଆରେ ଘର ଏମୁଣ୍ଡୁ ସେମୁଣ୍ଡୁ ମେଲା, ଦିହିଁ ଦିହେଁ କୁଆଡ଼େ ଗଲେ ? ପଞ୍ଚୁଆ ! ଏ ପଞ୍ଚୁଆ ! କୁଆଡ଼େ ଗଲକିରେ ବଅଁଶଯାକ ?

ପଞ୍ଚୁଆ    ଯାଉଚି ଜେଜେ । (ଘର ଭିତରୁ କହି କହି ଧାଇଁ ଧାଇଁ ଆସିଲା)

ମାଗୁଣି  :  ତୋ ବୋଉ କୁଆଡ଼େ ଗଲା ?

ପଞ୍ଚୁଆ    ବୋଉ ଯାଇଛି ପୋଖରୀକି ।

ମାଗୁଣି    ତୋ ବାପା ?

ପଞ୍ଚୁଆ  :  ବାପା ଗାଆଁ ଆଡ଼େ ଯାଇଛନ୍ତି । ତମେ କୁଆଡ଼େ ଯାଇଥିଲକି ଜେଜେ ?

ମାଗୁଣି    ମତେ ରଗାନା କହୁଛି । ମୁଁ ଦିଇଟା ଦିନ ରହିଲି ନେଇଁ, ସେଇଥିରେ ସବୁ ଖନ୍‌ଖରାପ୍ କରି ଦେଲେ । ଆସୁ ଆଜି ସେ ନିଧିଆ ।

ପଞ୍ଚୁଆ    କ'ଣ ହୋଇଛି ଜେଜେ ? ଏମିତି ରାଗୁଚ କାଇଁକି ?

ମାଗୁଣି  :  କ'ଣ ହୋଇଛି ତୁ ଜାଣିନଉଁ ?

ପଞ୍ଚୁଆ  :  କ'ଣ ହୋଇଛି ନ କହି ଏମିତି ଫଁ ଫଁ କାଇଁକି ହଉଚ ? ତମ ଭାଗବତ ବହି କିଏ ଚିରି ଦେଲାକି ?

ମାଗୁଣି  :  ଆରେ ଆମ ଆମ୍ବ ତୋଟା କିଏ ହାଣିଲା ?

ପଞ୍ଚୁଆ  :  ମହନି ଦାଦା ଲୋକ ନଗେଇ ହଣେଇ ଦେଲେ । ସିଏ ନୁହଁ ବାପାକୁ, ଚରଣ ଜେଜେ ଆଉ ଧରଣୀ ଜେଜେଙ୍କୁ ଟଙ୍କା ଦେଇଛନ୍ତି ।

ଆନଂଦ ଚଂଦ୍ର ପହି

ମାଗୁଣି ହଁ ମୋଉକା ଖୋଜୁଥିଲେ, ମୁଁ ଯେମିତି ଝିଅ ଘରକୁ ଯାଇଚି ସେମିତି ସବୁ ହାଣି ମାରି ସଫା କରିଦେଲେ । ଗଲା ସବୁ ଗଲା । ଏ ଗାଆଁରେ କି ଏ ଅଞ୍ଚଳରେ ଆଉ କୋଉଠି ହେଲେ ଗୋଟେ ଗଛ ନାହିଁ ।

ପଞ୍ଚୁଆ ଜାଣିଇଣି ଜେଜେ ! ଆମ ବାରିରେ ଯୋଉ ଆମ୍ବ ଗଛଟା ଥିଲା ସେଇଟାକୁ ବି ମହନି ଦାଦା ହାଣି ନେଇଗଲେ ।

ମାଗୁଣି : କ'ଣ କହିଲୁ ?ଆମ ବାରି ଆମ୍ବ ଗଛଟାକୁ ବି ହାଣି ନେଲା ? ଏଗୁଡ଼ାକୁ ସବୁ ଧରମ ଛାଡ଼ିଲାଣି । ଆମ ଗାଆଁରେ ଗଛଟେ ଏଣିକି ସାତ ସପନ । ବଣ ଖମାଣରୁ କାଠ ବୋହିକି ନଷ୍ଟାକଲେ, ଶେଷକୁ ବାରି ଘରେ ବି କିଛି ରଖିଲେ ନାହିଁ । ଅକାଳ ଘୋଟିବ ଏଥର, ଅକାଳ ।

ପଞ୍ଚଆ ଅକାଳ କ'ଣ ଜେଜେ ?

ମାଗୁଣି ମୋ ଆଗରେ ଭଟର ଭଟର ହୋନା କହୁଛି । ମୋମନ ଖାଲି ଜଳୁଛି ।

ପଞ୍ଚୁଆ କାଠ ନାହିଁକି ନିଆଁ ନାହିଁ, ତମ ମନ କେମିତି ଜଳୁଛି ?

ମାଗୁଣି (ରାଗିଯାଇ) ପଞ୍ଚୁଆ !

ପଞ୍ଚୁଆ ହଁ ଜାଣିଲି । ମନରେ କିରାସିନି ଢ଼ାଳି ଦିଆସିଲି ମାରି ଦେଇଚ ।

ମାଗୁଣି ଯା କିରାସିନି ଆଣ, ମୋ ଉପରେ ଓଜାଡ଼ିଦେ ଆଉ ନିଆଁ ନଗେଇ ଦେ ।

ପଞ୍ଚୁଆ ତମେ ମୋ ଉପରେ ଏମିତି ରାଗୁଚ କାଇଁକି ଜେଜେ ? ମୁଁ ତମର କ'ଣ କଲି ?

ମାଗୁଣି ତୁ ମୋ ଆଗରୁ ଗଲୁ, ଯା । ଆରେ ଏମିତି ଅନଉଚୁ କ'ଣ ? ଯାଉଚୁନା ।

(ପଞ୍ଚୁଆ ଆଗକୁ ପଛକୁ ଚାହିଁ ଚାଲି ଯାଉଚି । ଭିତରକୁ ପଶୁଥିଲା ନିଧିଆ ତା ଦେହରେ ପଞ୍ଚୁଆ ପିଟି ହୋଇ ପଡ଼ିଗଲା)

ନିଧିଆ କିରେ ଏମିତି କ'ଣ ହଉଚୁ ? ତୋତେ ବାଟ ଦୁଶୁ ନେଇଁ ?

(ପଞ୍ଚୁଆ ଉଠିପଡ଼ି ଆଗକୁ ପଛକୁ ଚାହିଁ ଚାଲିଗଲା ।)

ମାଗୁଣି କିରେ ମୁଁ ପରା ମନା କରିଥିଲି ଆମ ଭାଗ ଆମ୍ବ ଗଛ ବିକିରି

ହବ ନେଇଁ ବୋଲି । ତୁ କଣ ମନେମନେ ମୋ ସଂପତ୍ତିର ମାମଲତକାର ହେଇ ଗଲୁଣୁ ?

ନିଧିଆ ଧରଣୀ ଦା, ଚରଣି ଦା ଜିଦ୍ ଧରିଲେ ବିକିବାକୁ ।

ମାଗୁଣି ମୁଁ ତ କହିଥିଲି ସିଏ ଯଦି ବିକିବାକୁ ହକହକ ହଉଚନ୍ତି ତା ହେଲେ ତାଙ୍କ ଭାଗ ସିଏ, ବିକନ୍ତୁ, ଆମ ଭାଗ ବିକିରି ହବ ନେଇଁ ।

ନିଧିଆ ଧରଣୀଦା କହିଲେ ଆମ ଗାଆଁରେ ଆଉ କାହାର ଆମ୍ବ ଗଛ ନାହିଁ । ଆମ୍ବ ଗଛରେ ଆମ୍ବ ଆସିଲେ ପିଲାଏ କଷି ବେଳୁ ଖାଇଯିବେ । ରଖିକି ଫାଇଦା କ'ଣ ?

ମାଗୁଣି ଆମ୍ବ ନ ହେଲେ ନାହିଁ, ଗଛ ଆମର କାମରେ ଆସିଥାଆନ୍ତା । କଳସରେ ଆମ୍ବଡ଼ାଳ ଖଣ୍ଡେ ଦେବାକୁ ଆଉ ଆମ ଗାଆଁରେ ମିଳିବ ନେଇଁ ।

ନିଧିଆ : ସମସ୍ତଙ୍କର ଖତଗଦାରେ ମେଞ୍ଚା ମେଞ୍ଚା ଆମ୍ବଗଛ ଉଠିଚି ।

ମାଗୁଣି ଏବକା ଟୋକାଙ୍କର ବୁଦ୍ଧି ଅକଲ କିଛି ବୋଲି କିଛି ନାହିଁ । ଆରେ ସେ ଚାରା ଗଛର ଡ଼ାଳ କି କାମରେ ନାଗିବ ? ଫଳନ୍ତି ଆମ୍ବଗଛ ନ ହେଲେ ଶୁଭ କାମରେ ତା ଡ଼ାଳ ନାଗିବ ନେଇଁ ।

ନିଧିଆ ମୁଁ କ'ଣ ଏତେ କଥା ଜାଣିଚି ?

ମାଗୁଣି ବଣକୁ ହାଣିକି ପଦା କଲ, ଆମ୍ବ ତୋଟା ହାଣିକି ବିକିଲ, ସେତିକି ଅଣ୍ଟିଲା ନେଇଁ । ଶେଷକୁ ବାରିଘରେ ଯୋଉଗୋଟେ ଆଧେ ଆମ୍ବଗଛ ପଣସ ଗଛ, ଶିମୁଳିଗଛ ଥିଲା ତାକୁବି ହଣେଇ ଦେଲ ।

ନିଧିଆ (ହଡ଼ ବଡ଼େଇ କହିଲା) ନାଇଁ, ମୁଁ ଏଇ... ମୁଁ ଜାଣି ନେଇଁ ।

ମାଗୁଣି ତୁ ଜାଣି ନଉଁ ଆମ ବାରିରୁ ଆମ୍ବ ଗଛ କେମିତି ହଣା ହେଲା ?

ନିଧିଆ କନକ ସାଇ ଆଡ଼େ ଯାଇଥିଲା, ଥାମେ ସମସ୍ତେ ତୋଟା ହଣା ପାଖରେ ଥିଲୁ । ମହନିର ଲୋକ ଆସି ଗଛଟା ହାଣି ଦେଲେ । ପଛରେ ମୁଁ ତାକୁ ପାଟି କଲି, ସେତେ ବେଳକୁ ସିଏ ଗଛଟାକୁ ହାଣିକି ଅଧ ଗରିଆ କରି ଦେଇଥିଲା ।

ମାଗୁଣି ସତ କହ, ତୁ ଯଦି ବାରି ଗଛଟାକୁ ନ ହଣେଇଛୁ ତାହେଲେ ମୁଁ ମହନି ନାଆଁରେ ମକଦ୍ଦମା କରିବି ।

ଆନଂଦ ଚଂଦ୍ର ପହି

ନିଧିଆ ତା ଲୋକ ଭୁଲରେ ହାଣି ଦେଲେ । ମହନି ମୋ ହାତ ଧରି ଭୁଲ ମାଗିଲା । ଭାଇ,ବନ୍ଧୁ, ସାଇ, ପଡ଼ିଶା ହେଇ ପଡ଼ିଚେ ଏମିତି କ'ଣ ହୁଏ ନେଇଁ ? ତା ବୋଲି ଆମେ କଣ ଏମିତି ଟିକିଏ କଥା ରେ ମକଦମା କରିବା ?

ମାଗୁଣି ମତେ ତୁ ଏ କଥା ଗୁଡ଼ା ବୁଝାନା ନିଧିଆ । ମୁଁ ଢ଼େର ବୁଝିଛି । ତମ ସମସ୍ତଙ୍କ ଚାଲ ମୁଁ ବୁଝିଚି ।

ନିଧିଆ କି ଚାଲ ଏଥିରେ ରହିଲା ? ତମେ ଜେ ଖାଲି ଆଳୁଟାଏ ବୁଝିଲ ?

ମାଗୁଣି : କିରେ ନିଧିଆ ! ତୁ ଏମିତି ମୋ ଉପରକୁ ଝିଙ୍କାରି ମିଙ୍କାରି ହୋଇ କ'ଣ ଚଢ଼ି ଆସୁଚୁ ?

ନିଧିଆ ତମେ ତ ମଠରେ ଖାଉଚ ତମେ ଘରର ଅଭାବ ଅସୁବିଧା କ'ଣ ବୁଝିବ ? ତମେ ଚୁପ ହେଇ ବସ୍ । ତମକୁ କିଏ କହୁଚି ଉପରେ ପଡ଼ି ସବୁ କଥାରେ ମୁଣ୍ଡ ପୁରାଇ ମୁଣ୍ଡ ଖରାପ କରିବାକୁ ?

ମାଗୁଣି କ'ଣ କହିଲୁ ମୁଁ ମଠରେ ଖାଉଚି ?

ନିଧିଆ ତା ନ ହେଲେ ତମେ ଏକଥା କହନ୍ତ ? ଘରେ କିଛି ବୋଲି କିଛି ନାହିଁ, ଧାର କରଜରେ ମୁଁ ପୋତି ହୋଇ ଗଲିଣି । ମୋ ନାଆଁରେ କେତେ ନାଇଁ କେତେ ପୁଲିସି କେଶ୍ । ମୋ ଛୁଆ ପିଲା ଭୋକ ଓପାସରେ ଆଉଟୁ ପାଉଟୁ ହଉଚନ୍ତି । ତୋଟାଟା ତମର ଏତେ ବଡ଼ ହୋଇଗଲା ? ବିକିଲି ଭଲ କଲି ।

ମାଗୁଣି କ'ଣ କହିଲୁ ? ବିକିଲୁ ଭଲ କଲୁ ? ଆରେ ତୁ କାହାକୁ କ'ଣ କହୁଚୁ ? ତୁ ଏ ତୋଟା କମେଇ ଥିଲୁ ?

ନିଧିଆ ମୁଁ ତୋଟା କମେଇ ନେଇଁ, ତମେ କମେଇ ଥିଲ କି ? ତମ ବାପା, ଅଜା କମେଇ ଥିଲେ । କ'ଣ ହେଇଗଲା ସେଠୁ ? ମୋ ଗୁଜୁରାଣ ପେଇଁ ଆଜି ତୋଟା ବିକିଲି, ଦରକାର ହେଲେ କାଲି ଜମିବାଡି ବିକିବି, ଘରଡିହ ବିକିବି ।

ମାଗୁଣି କ'ଣ କଇଲୁ ? ଜମିବାଡି, ଘରଡିହ...
(ହାତ ଉଞ୍ଚାଇ ମାରିବାକୁ ଆସିବା ବେଳେ ହଠାତ୍ ଛାତିକୁ ଧରି ବସି ପଡିଲେ ।)
ଓଃ.... ଓଃ..... ଛାତି.... ଛାତି.... ଛା....

ଆନଂଦ ଚଂଦ୍ର ପହି

ନିଧିଆ (ପାଟି କରି ଧାଇଁ ଆସିଲା) କ'ଣ ହେଲା ବାପା ?
(ମାଗୁଣି ବେହୋସ ହୋଇ ପଡିଗଲା, ନିଧିଆ ତାକୁ ହଲାଇ ଦେଇ) ବାପା ! ବାପା ! ତମର ଏ କ'ଣ ହେଲା ବାପା ?
ପାଣି, ପାଣି ଆଣ କନକ !

କନକ (ପାଣି ଆଣି ଧାଇଁ ଆସିଲା) ବାପା ! ବାପା ! ତମର କ'ଣ ହେଲା ? ମୁହଁକୁ ପାଣି ଛାଟ ।
(ନିଧିଆ ବାପାର ମୁହଁକୁ ପାଣି ଛାଟିଆ)

ନିଧିଆ ବାପା ! ବାପା !

କନକ : ବାପାଙ୍କ ପାଟିରେ ମନ୍ଦେ ପାଣି ଦିଅ ।

ନିଧିଆ ନାଇଁ ଏମିତି ବାଗ ହଉନେଇଁ । ଧଇଲ ଧର, ବସେଇ ଦେବା ।
(ଧରାଧରି କରି ମାଗୁଣିକୁ ବସେଇଲେ । ନିଧିଆ ଉପରେ ଆଉଜିକି ମାଗୁଣି ବସିଲା । କନକ ମାଗୁଣି ପାଟିରେ ପାଣି ଦେଲା । ବୁଢ଼ା ଢ଼ୋକେ, ଦୁଇ ଢ଼ୋକ ପାଣି ପିଇଲା ।)



ଆନଂଦ ଚଂଦ୍ର ପହି

# ଅଷ୍ଟମ ଦୃଶ୍ୟ

ମାଗୁଣିର ଘର । ବସିଛନ୍ତି ସପନା, ଦୋଳିଆ, ଗନ୍ଧିଆ, ଆଉ ନିଧିଆ । ଖଣ୍ଡେ ଦୂରରେ ବସି କନକ ଚାଉଳରୁ ଗୋଡି ବାଛୁଚି । ସମୟ ଅପରାହ୍ନ)

ଗନ୍ଧିଆ ତମେ ଇଏ କିଛି ଭଲ କଲ ନେଇଁ ନିଧିଆଇ ! ଯେତେ ହେଲେ ସିଏ ତମର ବାପା, ତାଙ୍କ ମୁହଁରେ ଏମିତି ରାଢୁଆ କଥା କହିବା ତମର ଜମା ଠିକ୍ ହେଲା ନେଇଁ ।

କନକ ଯାଙ୍କର ସବୁ କଥାରେ ଗୋଟେ ବଡ ପାଟି । ଏତେ ଦିନର ଆମ୍ବ ତୋଟାଟା ହାଣିକି ବିକିଦେଲ, ସିଏ ମୁରବି ଲୋକ କହିଲେ କ'ଣ ହେଲା ? ତମେ ଚୁପ୍ ରହି ଯାଇଥିଲେ ହେଇ ନଥାନ୍ତା ?

ସପନା କଥାରେ କହିଚି ପରା ସରଗକୁ ନିଶୁଣି ନାହିଁକି ବଡ ଲୋକଙ୍କୁ ଉତ୍ତର ନାହିଁ ।

ନିଧିଆ ସେଟା ଗୋଟେ କାଳ ବେଳା ଥିଲା । ମୋ ପାଟିରୁ କ'ଣ ନାଇଁ କ'ଣ ବାହାରି ଗଲା । ମୁଁ ମାନୁଚି ମୋର ସବୁ ଭୁଲ୍ । ମୋରି ଯୋଗୁ ମୋ ବାପାଙ୍କର ଆଜି ଏ ଅବସ୍ଥା ।

ଦୋଳିଆ : ନିଧିଆଇ ! ତୁମେ ବାପାଙ୍କ ଗୋଡହାତ ଧରି ଭୁଲ ମାଗ ।

ନିଧିଆ ସେ କାମ ଏଯାଏ ବାକି ନାହିଁ । (କାନ୍ଦ କାନ୍ଦ ହୋଇ) ହେଲେ ବାପା ସବୁବେଳେ ଖାଲି ସେଇ ଆମ୍ବ ଗଛ, ପଣସ ଗଛ ହଉଚନ୍ତି ।

କନକ ଆମ୍ବ, ପଣସ ଗଛକୁ ସିଏ ଭାରି ଭଲ ପାଉଥିଲେ । (କାନ୍ଦି ପକାଇଲା)

ସପନା ଆଉ ଭାବିଲେ କ'ଣ ହବ ? ମଉସାଙ୍କୁ ଡାକ୍ତର ଦେଖା ।

ନିଧିଆ ମଧୁପୁର ଡାକ୍ତରଖାନାରୁ ଔଷଧ ଆଣିକି ଦେଇଚି । ହେଲେ

| | |
|---|---|
| | ସିଏ ଓଷଦ ଖାଉ ନାହାଁନ୍ତି । ଯାହା ଦେଲେ ଥୁ ଥୁ କରି ପାଟିରୁ କାଢ଼ି ପକଉଚନ୍ତି । |
| | (ଏହି ସମୟରେ ଭିତରୁ ମାଗୁଣି ଡାକିଲେ - ବୋହୂ ! ବୋହୂ !) |
| କନକ | ଯାଉଚି ବାପା ! (ଭିତରକୁ ଗଲା) |
| ନିଧିଆ | ମୋରି ଯୋଗୁ ମୋ ବାପାଙ୍କର ଆଜି ଏ ଅବସ୍ଥା । ମୋ ବାପା କ'ଣ ଆଉ ଭଲ ହେବେ ? (କାନ୍ଦି ପକାଇଲା) |
| ସପନା | ମଉସା ନିଶ୍ଚେ ଭଲ ହେଇ ଯିବେ । ତମେ ମୋଟେ ବ୍ୟସ୍ତ ହୁଅନା । ଚାଲ ବାହାରେ ଟିକେ ବୁଲି ଆସିବା । |
| ନିଧିଆ | ନା, ଥାଉ । |
| ଦୋଳିଆ | ଆସୁନା, ନୂଆଉତ ଅଛି । ଆସ ବୁଲି ଆଇଲେ ମନ ଟିକେ ଭଲ ନାଗିବ । |
| ନିଧିଆ | ହଉ ଚାଲ । |
| | (ସମସ୍ତଙ୍କର ପ୍ରସ୍ଥାନ) |



ଆନନ୍ଦ ଚନ୍ଦ୍ର ପହି

# ନବମ ଦୃଶ୍ୟ

(ମାଗୁଣିର ଘର । ମାଗୁଣି ରୋଗଶଯ୍ୟାରେ ଶୋଇଛି । କନକ ତା ଗୋଡ ଘଷା ଆଉଁସା କରି ଦେଉଛି)

ମାଗୁଣି : ଥାଉ ମାଆ ! ସେତିକି ଥାଉ । ଘସା ଆଉଁସା ଖାଇ ଖାଇ ମୋ ଦିହ ପରାଣ ହେଇଗଲାଣି ।

କନକ ହଉ ବସିଲ, ମୁଁ ତମକୁ ଶାଗୁଟିକେ ପେଇ ଦେଇ ଯାଏଁ ।

ମାଗୁଣି ମତେ କ'ଣ ପେଇବୁ ମାଆ ? ଆଉ ପାଣି କୁଆଡୁ ଆସିବ ? ଗଲା ସବୁ ଗଛ, ବୁରୁଛ ଲୋପ ପାଇଗଲା । ଆଉ ବରଷା ହବ ନେଇଁ । ସବୁଆଡ ଧୁ ଧୁ ଜଳିବ । ମରୁଡି ପଡିବ, ମରୁଡି ।

କନକ ତମେ ଏ ସବୁ କ'ଣ କହୁଚ ବାପା !

ମାଗୁଣି ମତେ ଆଗତ କଥା ଜଳ ଜଳ ହେଇ ଦେଖାଯାଉଚି । ବଣ ଜଙ୍ଗଲ ଗଲା, ବାଡି, ବଗିଚା ପଦା ହେଲା । ବର, ଓସ୍ତ, ଆମ୍ବ, ପଣସ, କେନ୍ଦୁ, କଇଁଆ, କଇଥ ଯାହା ଯୋଉଠି ଥିଲା ସବୁ ଗଲା ।

କନକ ଗଲାତ ଗଲା, ସମସ୍ତଙ୍କର ଗଲା । ତମେ ନଖାଇଲେ, ନପିଇଲେ ସେ ସବୁ କ'ଣ ଆସିବ ?

ମାଗୁଣି ଆଉ ବରଷା ହବ ନେଇଁ ।

କନକ ଆସି ରଜ ହବାକୁ ବସିଲାଣି, ବରଷା ହେଲା ନେଇଁ । ନହେଲା ନାହିଁ । ଯାହା ଭାଗ୍ୟରେ ଥିବ ତା' ଭୋଗିବାକୁ ପଡିବ ।

ମାଗୁଣି ପାଣି ହଉଚି ଜୀବନ । ବରଷା ନହେଲେ ପଲ ପଲ ମଣିଷ ଛଟପଟ ହେଇ ମରିଯିବେ ।

କନକ ଯାହା ଯେତେବେଳେ ହବାର ଥିବ ହବ । ତମେ ଟିକେ ବସିଲ ମୁଁ ତମକୁ ଶାଗୁଟିକେ ପେଇ ଦେଇ ଯାଏଁ ।

ମାଗୁଣି ମତେ ସବୁ ବିଷ ପିତା ନାଗୁଚି ମାଆ, ମୁଁ କିଛି ଖାଇବି ନେଇଁ ।

କନକ — କିଛି ନ ଖାଇଲେ କେମିତି ହବ ? ଉଠିଲ, ଉଠ ।
(ଉଠେଇ ବସେଇବାକୁ ଚେଷ୍ଟା କଲା)

ମାଗୁଣି — ନାଇଁ ଥାଉ, ମୁଁ ଏମିତି ଶୋଇଚି, ତୁ ଯାହା ମୋ ପାଟିରେ ଦଉଚୁ ଦେ ।

କନକ — ସେମିତି ବିଛଣାରେ ଶୋଇକି ପିଇଲେ ବିଛଣାରେ ପଡିବ । ଜନ୍ଦା, ପିମ୍ପୁଡି ହେବେ ।
(ମାଗୁଣିକୁ ବସାଇବାକୁ ପୁଣି ଟେକିଲା)

ମାଗୁଣି — ଓଃ.... ଓଃ.... ଆଃ.... ମୋ ବେକକୁ କାଟୁଚି ।

କନକ — (ବେକ ତଳେ ଆଉ ଗୋଟେ ତକିଆ ଦେଲା) ଏଥର ହେଲାତ ?

ମାଗୁଣି — ହଁ । ହେଲା ।

କନକ — ଆଁ କର ।
(ମାଗୁଣି ଆଁ କଲା । କନକ ତା' ପାଟିରେ ଚାମଚେ ଶାଗୁ ଖୁଆଇ ଦେଲା ।)

ମାଗୁଣି — (ଥୁ ଥୁ କରି ସବୁଯାକ ଶାଗୁ ପାଟିରୁ କାଢ଼ି ପକାଇଲା)
ଥୁ, ଥୁ.... ପିତା ଲାଗୁଚି ।
(ଏହି ସମୟରେ ତରବର ହୋଇ ପ୍ରବେଶ କରିଛି ଗନ୍ଧିଆ । କିଛି ନ କହି ଠିଆ ହେଲା । କହିବ ନକହିବ ହେଲା ।)

କନକ — କ'ଣ ହେଲା ଗନ୍ଧିଆ, ତମେ ଏମିତି ଧଇଁସଇଁ କାଇଁକି ହଉଚ ?

ଗନ୍ଧିଆ — ନୂଆଉ ! ଏଇ....

କନକ — କ'ଣ ହେଲା ?

ମାଗୁଣି — ବୋହୂ ! କିଏ ଆଇଚି କି ?

କନକ — ଗନ୍ଧିଆ ଆଇଚନ୍ତି । କ'ଣ ହେଲା ଗନ୍ଧିଆ ? ଆରେ କ'ଣ ହେଲା କହୁନ କାଇଁକି ?

ଗନ୍ଧିଆ — ନିଧିଆଇକି ପୁଲିସି ପୁଣି ବାନ୍ଧିନେଲା ?

କନକ — (କାନ୍ଦିଲା) ପୁଲିସି ବାନ୍ଧି ନେଲା ? ତାକୁ ପୁଣି କାଇଁକି ପୁଲିସି ବାନ୍ଧି ନେଲା ?

ମାଗୁଣି — କାହାକୁ ପୁଲିସି ବାନ୍ଧି ନେଲା ?

ଗନ୍ଧିଆ — ନିଧିଆଇ କି ?

ମାଗୁଣି ଏଁ ନିଧିଆକୁ ପୁଲିସି ପୁଣି ବାନ୍ଧିନେଲା ? ମୋ ଛାତି.... ଓଃ
ମୋ ଛାତି, ମୋ.... ଛା.....ତି....
(ମାଗୁଣି ଯନ୍ତ୍ରଣାରେ ଛଟପଟ ହେଲା ।)

କନକ (କାନ୍ଦି କାନ୍ଦି ମାଗୁଣିକୁ କୁଣ୍ଢାଇ ଧରି)
ବାପା ! ବାପା ! ତମ ଛାତି କ'ଣ ହେଲା ବାପା ? ବାପା,
ବାପା ଗନ୍ଧିଆ ଦେଖିଲୁ ବାପାଙ୍କର କ'ଣ ହେଲା ? ବାପା
କାହିଁକି କିଛି କଥା କହୁ ନାହାଁନ୍ତି ?

ଗନ୍ଧିଆ ମଉସା ! ମଉସା !
(ମାଗୁଣିଙ୍କୁ ହଲାଇ ଦେଲା) କଥା କୁହ ମଉସା । ମଉସା ।

କନକ ବାପାଙ୍କର କ'ଣ ହେଲା ଗନ୍ଧିଆ ?

ଗନ୍ଧିଆ ମୁଁ ଧରୁଚି, ତମେ ମଉସାଙ୍କ ପାଟିରେ ପାଣି ଟିକେ ଦିଅ
ନୂଆଉ ।

କନକ (କନକ ସେମିତି କାନ୍ଦୁ କାନ୍ଦୁ ହାତରେ ପାଣି ଟିକେ ମାଗୁଣିଙ୍କ
ପାଟିରେ ଦେଇ) ବାପା ! ବାପା ।
(ପାଣିଟିକାକ ମାଗୁଣିଙ୍କ ପାଟି ଭିତରକୁ ନଯାଇ ଫେରି
ଆସିଲା ।)

କନକ (ଚିତ୍କାର କଲା) ବାପା ! ବାପା ! ଇଏ ତମର କଣ ହେଲା
ବାପା ! (କନକ ମୁଣ୍ଡ ବାଡେଇ କାନ୍ଦିଲା ।)



ଆନନ୍ଦ ଚନ୍ଦ୍ର ପହି

# ଦଶମ ଦୃଶ୍ୟ

(ପୋଲିସ ଷ୍ଟେସନ । ଗୋଟିଏ ଚୋରକୁ ପିଟିପିଟି ହାଜତରେ ପୂରାଇଲେ ପୋଲିସ ସବ୍‌ଇନିସ୍‌ପେକ୍ଟର । କ୍ଲାନ୍ତ ହୋଇ ଆସି ନିଜ ଚେୟାରରେ ବସିଲେ । ମୁହଁରୁ ଝାଳ ପୋଛିଲେ । ଟେବୁଲ ଉପରେ ଥୁଆ ହୋଇଥିବା ଗ୍ଲାସରୁ ପାଣି ପିଇଲେ । ଏହି ସମୟରେ ନିଧିଆକୁ ହ୍ୟାଣ୍ଡକପ୍ ପକାଇ ଟାଣି ଟାଣି ଆଣିଲା କନେଷ୍ଟବଲ୍ ।)

ନିଧିଆ (ପୋଲିସ ସବ୍‌ଇନିସ୍ ପେକ୍ଟରଙ୍କ ପାଦ ଧରି ପକାଇ) ମୋତେ ଆଜି ଦିନଟା ଛାଡି ଦିଅନ୍ତୁ ହଜୁର । ମୋ ବାପା ଭାରି ବେମାର ।

ସ.ଇ. (ଗୋଡ ଛାଟିଦେଇ) ବନ୍ଧା ହେଲା ବେଳକୁ ବାପ ବେମାର ଆଉ କାଠ ଚୋରି କଲା ବେଳକୁ ଶଳାକୁ ଦିନରାତି ଅଣ୍ଟୁ ନେଇଁ ।

ନିଧିଆ ନାଇଁ ହଜୁର ! ମୁଁ ମିଛ କହୁନେଇଁ । ଆପଣ ଲୋକପଠେଇ ଆମ ଗାଆଁରୁ ବୁଝନ୍ତୁ, ମୋ ବାପା ଆଜିକି ଆଠ ଦିନ ହେଲା ଶକ୍ତ ବେମାର । କିଛି ଖାଉ ନାହାଁନ୍ତି, ପାଣି ଟୋପେ ବି ପାଟିକି ନୋଉ ନାହାଁନ୍ତି ।

ସ.ଇ. ମୋ ଆଗରେ ତୋ ବାପା ବେମାରି କଥା କହିଲେ ମୁଁ କ'ଣ କରିବି ? ମୁଁ ଡାକ୍ତର ନା କବିରାଜ ?

ନିଧିଆ ମତେ ଛାଡି ଦିଅନ୍ତୁ ଆଜ୍ଞା, ମୋ ବାପାଙ୍କର ଦେହ ଭଲ ହେଇଗଲେ ମୁଁ ନିଜେ ଥାନାକୁ ଆସିବି ।

ସ.ଇ. ସେ ପାଠ ଗୁଡା ମତେ ପଢ଼ାନା । ମୋ ମୁଣ୍ଡରେ ବାଳ ଯେତେ ମୁଁ ତୋରି ଭଳିଆ ସେତେ ଚୋରକୁ ସାବାଡ କରିଚି । ତମେ ଶଳା ଯଦି ମନକୁ ଥାନାକୁ ଆସୁଥାନ୍ତ ଆମେ ଆଉ କାଇଁକି ଥାଆନ୍ତୁ ? ଲାଠି, ହାତକଡି, ଏସବୁ କାଇଁକି ଥାଆନ୍ତା ?

ନିଧିଆ ମୁଁ ସତ କହୁଚି ଆଜ୍ଞା ମୋ ବାପା ଦିହ ଟିକେ କମିଲେ ମୁଁ ପଳେଇ ଆସିବି ।

ସ.ଇ. ତମ ଗାଆଁର ପଚାଶ ଲୋକଙ୍କ ନାଆଁରେ ୱାରଣ୍ଟ ଅଛି । ସବୁ ଶଳା ଲୁଚି, ଲୁଚିକି ବୁଲୁଚ । ତୋ ନାଆଁରେ ଚାରିମାସ ହେଲା ୱାରେଣ୍ଟ ବାହାରି ଲାଣି, ଏତେ ଦିନ ଯାଏତ ଥାନାରେ ହାଜର ହେଉ ନଥିଲୁ ? ତମକୁ ସବୁ ମୋଟେ ଉପ୍ରୋଧ ନାହିଁ । ମଧୁଆ ।

କନେଷ୍ଟବଲ୍ : ସାର୍ ।

ସ.ଇ. ମୋ ମୁହଁକୁ ଅନେଇକି କ'ଣ ଠିଆ ହେଲୁ ? ନେ ଏଟାକୁ ଭିତରେ ପୂରା ।

(କନେଷ୍ଟବଲ୍ ନିଧିଆର ହାଣ୍ଡକପ୍ ଧରି ଟାଣିଲା)

ନିଧିଆ ଦୟା କରନ୍ତୁ ହଜୁର ! ମୁଁ ନଗଲେ ମୋ ବାପା....

ସ.ଇ. ରଖବେ ତୋ ବାପା । ଯାର ଏକା ଗୋଟେ ବାପା ଅଛି । ବାପା ବୁଢ଼ା ହେଲାଣି ମରିବ । ତୁ ଯାଇକି କ'ଣ କରିବୁ ?

ନିଧିଆ (ପୁଣି ଯାଇ ଗୋଡ ଧରିଲା) ମତେ ଏଇ ଥରଟା ଛାଡି ଦିଅବାବୁ !

ସ.ଇ. ଛଡା, ଛଡି ପାଠ ମୁଁ ଜାଣି ନେଇଁ । ମୁଁ ତତେ ଆଜି କଚେରୀକି ଚାଲାଣ କରିଦେବି । ତୁ କାଲି କଚେରୀରୁ ଜାମିନିରେ ଆସିବୁ ।

ନିଧିଆ ନାଇଁ ବାବୁ ! ମୋ ବାପାଙ୍କ ହାଲ୍ ଜମାରୁ ଭଲ ନାହିଁ । କେତେବେଳେ କ'ଣ ହବ କଇ ହବ ନେଇଁ । ଆପଣ ଟିକେ ଦୟା କରନ୍ତୁ ହଜୁର !

ସ.ଇ. ଦୟା କଲେ ମୋ ଚାକିରିଟା ଗୋଲ୍ ହେଇଯିବ । ଶହ ଶହ ୱାରଣ୍ଟ୍ ଥାନାରେ ପଡିଛି । ଉପରୁ ତାଗଦା ଉପରେ ତାଗଦା ଆସୁଛି । ଯେମିତି ହେଲେ ଏଇ ମାସ ଭିତରେ ସବୁ ୱାରଣ୍ଟ ଜାରି ନକଲେ ଆଉ ରକ୍ଷା ନାହିଁ ।

(ଏହି ସମୟରେ ଗଦେଇର ପ୍ରବେଶ)

ଗଦେଇ ନିଧିଆ ! ତୋ ବାପା ଚାଲିଗଲେ ।

ନିଧିଆ ଆଁ, ମୋ ବାପା ଚାଲିଗଲେ । (ଭୋ ଭୋ ହୋଇ କାନ୍ଦିଲା ଗଦେଇ କାନ୍ଧରେ ମୁଣ୍ଡ ଥୋଇ) ମୋ ଉପରେ ରାଗ କରି

ମୋ ବାପା ଚାଲିଗଲେ । (କାନ୍ଦିଲା)

ଗଦେଇ ଦାରୁଗା ବାବୁ ! ନିଧିଆକୁ ଟିକେ ଛାଡି ଦିଅନ୍ତୁ । ସିଏ ଗଲେ ତା ବାପାଙ୍କର ଶବ ଦାହ ହବ ।

ସ.ଇ. ମୁଁ ତାକୁ ଛାଡି ପାରିବି ନାହିଁ । ମୁଁ କୋର୍ଟରେ ହାଜର କରିଦେବି । ତମେ ସେଇଠୁ ଜାମିନିରେ ଆଣିବ ।

ଗଦେଇ ବାସି ମଡା କାଲିକି ରଖି ହବ ନେଇ ହଜୁର ! ବୁଢ଼ା ଶୁକୁ ଶୁକୁ ହଉଥିଲା, ନିଧିଆର ଗିରିଫ ହବା କଥା ଶୁଣିବି ହୋସ୍ ବୁଡିଗଲା । ବୁଢ଼ା ଆଉ ଉଠିଲା ନାହିଁ । ମୁଁ କଥା ଦଉଚି ଆଜ୍ଞା ତା ବାପାର ଶୁଦ୍ଧି ସରିବା ବାସିଦିନ ମୁଁ ଆଣିକି ତାକୁ ଆପଣଙ୍କ ପାଖରେ ହାଜର କରେଇବି ।

ନିଧିଆ (କାନ୍ଦି କାନ୍ଦି) ମୁଁ ଏମିତି ହାନି କପାଳିଆ ଶେଷ ବେଳେ ବାପାଙ୍କ ମୁହଁରେ ମନ୍ଦେ ପାଣି ଦେଇ ପାରିଲି ନେଇଁ ।

ଗଦେଇ ପୁଅ ଥାଉଁ ଥାଉଁ ବାପା ମୁହଁରେ ଅନ୍ୟ କେହି ନିଆଁ ଦବାଟା ଠିକ୍ ହବ ନେଇଁ । ତାକୁ ଟିକେ ଛାଡି ଦିଅନ୍ତୁ ହଜୁର !

ସ.ଇ. ଆମେ ସବୁ ସରକାରୀ ନିୟମରେ ବନ୍ଧା । ଏଠି ଦୟା, ମାୟା, ମମତାର ସ୍ଥାନ ନାହିଁ । ହଉ, ଠିକ୍ ଅଛି । ମୁଁ ଆଜି ଛାଡି ଦଉଚି । ଆଜି କନେଷ୍ଟବଲ୍ ନେଇକି ଯିବ । ଶବଦାହ ସରିଲେ ନିଧିଆକୁ ସାଙ୍ଗରେ ଧରିକି ଆସିବ । ତାଠୁ ଅଧିକ ସାହାଯ୍ୟ ମୁଁ କରି ପାରିବି ନାହିଁ । କ'ଣ ରାଜିତ ?

ନିଧିଆ ଶୁଦ୍ଧିଟା ସରିବା ପର୍ଯ୍ୟନ୍ତ ଟିକେ ସବୁରୁ କରନ୍ତୁ ହଜୁର !

ସ.ଇ. ସେ ଶୁଦ୍ଧି ଫୁଦ୍ଧି ମୁଁ ଜାଣିନେଇଁ । ଶବ ଦାହ ସରିଲେ ତମେ ଚାଲି ଆସିବ । ମୁଁ କାଲି କୋର୍ଟକୁ ଚାଲାଣ କରିଦେବି । ତମେ ତମର କୋର୍ଟରୁ ଜାମିନିରେ ଆସିବ, ଶୁଦ୍ଧି କରିବ ।

ଗଦେଇ ହଉ ଠିକ୍ ଅଛି, ଆମେ ରାଜି ।

ସ.ଇ. ମଧୁଆ ! ଆସାମିକି ନେଇଯା, ଆଜି ଶବ ଦାହ ସରିଲେ ଆଣିକି ଆସିବୁ ।

କନେଷ୍ଟବଲ୍ : ସାର୍ ।

(ଗଦେଇ ଓ ନିଧିଆ ନମସ୍କାର କଲେ । ସେମାନେ ନମସ୍କାର କରି ଘରକୁ ଗଲେ, ତାଙ୍କ ପଛେ ପଛେ କନେଷ୍ଟବଲ୍ ଗଲା ।)

ଆନନ୍ଦ ଚନ୍ଦ୍ର ପହି

## ଶେଷ ଦୃଶ୍ୟ

(ମାଗୁଣିର ଶବ ଥୁଆ ହୋଇଛି । ଗାଆଁର ଅନେକ ଲୋକ ରୁଣ୍ଡ ହୋଇଛନ୍ତି । କୋକେଇ ବାନ୍ଧିବାକୁ କାଠ ନାହିଁ କି ବାଉଁଶ ନାହିଁ । ଶବ ପୋଡ଼ିବାକୁ କାଠ ନାହିଁ ।)

ନିଧିଆ (କାନ୍ଦି କାନ୍ଦି) ମୋର ସବୁ ସରିଗଲା । ମୋରି ଯୋଗୁ ମୋ ଦେବତା ପରି ବାପା ଚାଲିଗଲେ । ମୁଁ ଦୋଷୀ, ମୁଁ ପାପୀ । (କାନ୍ଦି କାନ୍ଦି ମାଗୁଣିର ଶବ ଉପରେ ମୁଣ୍ଡ ବାଡ଼େଇଲା)

ଗଦେଇ ଆଉ କାନ୍ଦିଲେ କ'ଣ ହେବ ପୁଅ ? ଯାହା ହବାର ଥିଲା ହୋଇଗଲା । ମାଗୁଣି ଭାଇ ନଗା ହାରି ପୂରିଲା ସିଏ ଗଲା । ସମସ୍ତେ ଏମିତି ଦିନେ ନା ଦିନେ ଯିବେ । ଆଉ ଡେ଼ରି କରନା, ଶବ ଉଠେଇବାର ବନ୍ଦୋବସ୍ତ କର । କିରେ ସପନା, ଦୋଳିଆ, ଗନ୍ଧିଆ ! ଆରେ ତମେ ସବୁ ଠିଆ ହେଲ କାଇଁକି ? କ'ଣ ବାସିମଡ଼ା କରିବ ? ମହନି ! କିରେ ଯା କୋକେଇ ସଜାଡ଼ ।

ନିଧିଆ ମୋ ଉପରେ ଅଭିମାନ କରି ବାପା ଚାଲିଗଲେ ।(କାନ୍ଦିଲା)

ଗଦେଇ ତୁ ଏମିତି ଛୁଆଙ୍କମିନ୍ତି କାନ୍ଦିଲେ ହବ ? ତୁ ଏମିତି ଅଧର୍ଯ୍ୟ ହେଲେ ଶବଦାହ ହେବ କେମିତି ?

ନିଧିଆ (ସେମିତି କାନ୍ଦୁଥିଲା)

ଗଦେଇ କିରେ ସପନା ଭେଲେକା ହେଇ ଠିଆ ହେଲେ ବାସିମଡ଼ା ହବ । ଯା କୋକେଇ ସଜିଲିକର । ନିଧିଆ ! ଯା ବାରିରୁ କାଠ, ବାଉଁଶ ବାହାର କର ।

ନିଧିଆ (କାନ୍ଦ ବନ୍ଦ କରି ଆଖି ପୋଛି) ଆମ ବାଇରେ କାଠ ବାଉଁଶ କିଛି ନାହିଁ ।

ଗଦେଇ ଆଉ କାହା ବାଉରେ ଅଛି ? ଆରେ ସମସ୍ତେ ଏମିତି ଚୁପ୍ ଚାପ୍ ଠିଆ ହେଲେ କ'ଣ ହବ ? ଯା ଯାହା ବାଇରେ ଯାହା

ଅଛି ଆଣ ।

ସପନା ଆମ ବାଇରେତ କିଛି ନାହିଁ ।

ଗଦେଇ ଦୋଳିଆ ! ତମ ବାଇରେ ?

ଦୋଳିଆ ଆମ ବାଇରେ କାଇଁ? ତମ ବାଇରେ ଯଦି ଥିବ ଦଉନା ଗଦେଇ ଦା ।

ଗଦେଇ ଆମ ବାଇରେ କାଠିକୁଟା କିଛି ନାହିଁ ।ମହନି ! ତମ ବାଇରେ କିଛିନାହିଁ ?

ମହନି ଆମ ବାଇରେ କିଛି ନାହିଁ ।

ନିଧିଆ (ରାଗି ଯାଇ) ଗାଆଁର ଏତେ ଲୋକ ଏଠି ଅଛନ୍ତି, କାହାରି ଘରେ କିବାରିରେ କ'ଣ କୋକେଇ ବାନ୍ଧିବାକୁ କାଠ କି ବାଉଁଶ ଖଣ୍ଡେ ନାହିଁ ? ଆଜି ମୋ ବାପା ମରିଚି, ଆଉ କ'ଣ କେହି ମରିବେ ନେଇଁ ? ମୁଁ ଦେଖିବି ସେତେବେଳେକୁ କାଠ କି ବାଉଁଶ ବାହାରିବକି ନାହିଁ ।

ଗନ୍ଧିଆ ନିଧିଆଇ ! ତୁ ସିନା ମିଛଟାରେ ରାଗୁଛୁ, କାହା ବାଇରେ କ'ଣ କାଠ, ବାଉଁଶ ଥାଇକି କିଏ ଦଉ ନେଇଁ ? ଏ କାମରେ କିଏ କ'ଣ ମନାକରେ ? ତମ ବାରିଘରେ ଯେମିତି ନାହିଁ, ଆମ ସମସ୍ତଙ୍କ ବାରିଘରେ ସେମିତି ନାହିଁ ।

ଗଦେଇ : କାଠ, ବାଉଁଶ ନଥିଲା କାଇଁକି ? ଆମ ଗାଆଁଠୁ କ'ଣ ଆଉ କୋଉ ଗାଁରେ ବେଶି କାଠ, ବାଉଁଶ ଥିଲା ? ଆମ ଏ ଗାଆଁ ଚାରିପଟେ ଜଂଗଲ ଥିଲା । ତମେ ସବୁ ମିଶିକି ଜଙ୍ଗଲ ହାଣିକି କାଠ ବିକିଲ, କାଠ ପୋଡ଼ିକି କୋଇଲା କରିକି ବିକିଲ । ବଣ ପଦା ହୋଇଗଲା ।ଏବେ ଆମ ଗାଆଁଠୁ କୋଡ଼ିଏ ତିରିଶି କୋଶ ଦୂରରେ ଗଛଟେ ବି ନାହିଁ । ଚୁପ୍ ହେଇ ଠିଆ ହେଲ କାଇଁକି ? ମୁଁ ଯାହା କଇଲି ସେ କଥା କ'ଣ ମିଛ ? ଆମ ଗାଆଁ ଭିତରେ ଯୋଉ ଆମ୍ବ, ପଣସ, କଇଁଆ, ବର, ଓସ୍ତ ଗଛ ଥିଲା ତାକୁ ଏଇ ମହିନି ହାଣି ନେଇ କଲିକତାରେ ବିକିଲା ।

ମହନି : ହଁ, ତମେ ଯାହା କହିଲ ସବୁଠିକ୍ । ମୋରି ଯୋଗୁ ଖାଲି ଆମ ଗାଆଁ ନୁହଁ, ପାଖ ଆଖ ପଚାଶ ଖଣ୍ଡ ଗାଆଁରେ କୋଉଠି ହେଲେ ଗୋଟେ ଗଛ ନାହଁ ।

ଆନଂଦ ଚଂଦ୍ର ପହି

ଗଦେଇ ମାଗୁଣି ଭାଇ ବଞ୍ଚିଥିବା ବେଳେ ସମସ୍ତଙ୍କୁ ବୁଝାଉଥିଲା ଗଛ କାଟନା ସେଥିରେ ପେଟ ପୂରିବ ନେଇଁ, ବରଂଚ ଦାନାଙ୍କନା ଅଣ୍ଟିବ ନେଇଁ । ଅପାଳକ ପଡ଼ିବ । ତମେ ତା କଥା କେହି ଶୁଣିଲ ନେଇଁ ।

ନିଧିଆ ହଉ, ତା ହେଲେ ଠିକ୍ ଅଛି । କେହି କାଠ ବାହାର ନକଲେ ନାହିଁ । ମୋ ବାପାର ଶବ କଣ ଅପୋଡା ରହିବ ?
(ନିଜ ଘର ଚାଳ ଓଲାରିବାକୁ ଉଦ୍ୟମ କଲା) ମୁଁ ମୋ ଘର ଭାଙ୍ଗିବି କାଠ, ବାଉଁଶ ବାହାର କରିବି ।

ଗଦେଇ : କିରେ ନିଧିଆ ! ଏଇ କ'ଣ କରୁଚୁ ?

ସପନି, ଦୋଳିଆ } ରହ ନିଧିଆଇ ! ଏମିତି କାଇଁକି ହଉଚୁ ?
(ତିନି ଜଣଯାକ ନିଧିଆକୁ ଧରି ପକାଇଲେ)

ଗନ୍ଧିଆ ଘର ଭାଙ୍ଗିଦେଲେ ଶୀତ, କାକର, ଖରା, ବରଷାରେ ଛୁଆପିଲାଙ୍କୁ ଧରି ମୁଣ୍ଡ ଗେଞ୍ଜିବୁ କୋଉଠି ?

ନିଧିଆ ମୋର ଆଉ ଜୀଇବା ଦରକାର ନାହିଁ । ମୋ ବାପା ମରିଚି ଆମେ ସମସ୍ତେ ତାରି ସାଙ୍ଗରେ ମରିବୁ ।

ଗଦେଇ ତୁ ଏମିତି ବାଇଆ ବାତୁଳ ପରି ହୋନା ନିଧି । ଏମିତି ବେସ୍ତ ହେଲେ କ'ଣ କିଛି ହୁଏ ? ଆମେ ଏତେ ଲୋକ ଏଠି ଏକାଠି ହେଇଚେ ଥିର ମନରେ ଭାବିଲେ ଏଥକୁ କିଛି ବୁଦ୍ଧିବାଟ କ'ଣ ବାହାର କରି ପାରିବା ନେଇଁ ?

ନିଧିଆ ଏ ସାକୁଲା, ସାକୁଲି କଥାରେ କାମ ହେଇଯିବ ନେଇଁ । କାଠ ଦରକାର, ବାଉଁଶ ଦରକାର, କୋକେଇ ସଜଡା ହବ, ଶବ ପୋଡା ହବ ।

ଗଦେଇ ତୁ ଟିକେ ଥିର ହୋ ।

ନିଧିଆ ଥିରେ ହେଇ ଆଉ କେତେବେଳ ରହିବି ? ମୋ ବାପାର ଶବ ପଡିକି ରହିଚି । ଡେରି ହେଲେ ଶବ ବାସି ହେଇଯିବ । ତମ ମନରେ ସବୁ କ'ଣ ଅଛି ? ମୋ ବାପା ଶବକୁ କ'ଣ କାଉ, ସାରୁଗୁଣା, ବିଲୁଆ, କୁକୁର ମୁହଁରେ ଦବ ?

ଗଦେଇ ତୁ ବେସ୍ତ ହୋନା ପୁଅ । ମାଗୁଣି ଭାଇ ପୁରୁଖା ଲୋକ । ତାକୁ ନ ପୋଡ଼ି ପୋତି ଦେବା କି ପକେଇ ଦେବା କଥା କିଏ

କହିଲା ? ଏତେ ଲୋକ ଅଛେ କେହି କ'ଣ କିଛି ଗୋଟେ ବାଟ....

ମହନି ଏମିତି କଲେ କେମିତି ହୁଅନ୍ତା ?

ସପନା କେମିତି ?

ମହନି ବଅଣ୍ଡା ଛକରୁ ପେଟୋରୋଲ ଟିଣଟେ ଆଣିକି ଶବ ଓପରେ ଢ଼ାଳି ଦେଇ ଡିଆସିଲି ମାରି ଦେଲେ....

ଗଦେଇ ହେଃ, ଏ ଗୁଡା ଗୁଡେ କଣ କଥା ? ଶବ କ'ଣ ଏମିତି ପୋଡା ଯାଏ ?

କନକ ନାଇଁ, ନାଇଁ ବାପାଙ୍କୁ ପେଟେରୋଲରେ ପୋଡନା । ତାଙ୍କ ଆତମା ଦହଗଂଜ ହବ ।

ଗଦେଇ କିରେ ମହନି ! ତୁ ମାଗୁଣି ଭାଇ ତୋଟାରୁ ଯୋଉ ଆମ୍ବ ଗଛ ହାଣିଚୁ ତା ଖୁଣ୍ଡା, ଶିଅ, ଚେରତ ଥିବ ?

ମହନି ଅଛି ।

ଗଦେଇ : ସେ ସବୁ ତାଡି ଆଣିଲେ ମାଗୁଣି ଭାଇ ଶବକୁ ଦାହ କରି ହବ ନେଇଁ ?

ମହନି ହବ ଯେ କଞ୍ଚା ଗୁରାକ ଧୂଆଁ ହବ ।

ଗଦେଇ ମୁଁ ଆଉ ଗୋଟେ କଥା କହିବି ତମେ ସବୁ ମାନିବ ?

ଗନ୍ଧିଆ କ'ଣ କହୁନା ?

ଗଦେଇ : କିରେ ସପନା, ଦୋଳିଆ ! ତମେ ମାନିବତ ?

ସପନା }
ଦୋଳିଆ } ମାଗୁଣି ମଉସା କାମ ପାଇଁ ଯାହା ଦରକାର ଆମେ କରିବୁ ।

ଗଦେଇ ନଧିଆ ! ତୁ ?

ନିଧିଆ ତମେ ମୋ ବାପା ସମାନ । ତମ କଥା ମୁଁ କ'ଣ କେବେ ତଳେ ପକେଇଚି ?

ଗଦେଇ ଯୋଉ ମାଗୁଣି ଭାଇ ବଣ, ଜଙ୍ଗଲ ଆଉ ଗଛ ବୁରୁଛକୁ ଏତେ ଭଲ ପାଉଥିଲା ତାରି ପାଇଁ ତମ ସମସ୍ତଙ୍କୁ ଆଜି ମୋର ଗୋଟିଏ ମାଗୁଣି । ତମେ ସବୁ ଆଜିଯାଏ ଯୋଉଁ କୁରାଢ଼ିରେ ହଜାର ହଜାର ଗଛର ବେକ କାଟି ବଣ ଜଙ୍ଗଲ ପଦା କରିଚ ତାର ବେଣ୍ଟକୁ ହୁରାଳି ଆଣି ମାଗୁଣି ଭାଇ ଜୁଇରେ ଥୋଇବ ।

ଆନଂଦ ଚଂଦ୍ର ପହି

ଆମ ଗାଆଁରେ ତିନିଶହ ଘର । ପାଖାପାଖି ତିନିଶହ କୁରାଢ଼ି ବେଣ୍ଟ ଥିବ । ସେତକ ହେଲେ ମାଗୁଣି ଭାଇର ଶବ ଦାହ ପାଇଁ ଢ଼େର ହେବ ।

ନିଧିଆ, ଦୋଳିଆ, ସପନା, ଗନ୍ଧିଆ, ମହନି : ହଁ, ହଁ ଆମେ ସେଇଆ କରିବୁ । ଆମ ଗାଆଁର ସବୁ କୁରାଢ଼ିର ବେଣ୍ଟ ଦେଇ ଆମେ ଏ ଶବ ଦାହ କରିବୁ ।

ଗଦେଇ : ସମସ୍ତେ ମାଗୁଣି ଭାଇଙ୍କ ଶବ ଛୁଇଁ ନିୟମ କର ଆଉ କୁରାଢ଼ିରେ ବେଣ୍ଟ ଲଗାଇବ ନାହିଁ କି ଗଛ କାଟିବ ନାହିଁ ।

ନିଧିଆ, ଦୋଳିଆ, ମହନି, ସପନା, ଗନ୍ଧିଆ : ଆଉ କେବେ କୁରାଢ଼ି ବେଣ୍ଟ ଲଗାଇବୁ ନାହିଁ କି ଗଛ ହାଣିବୁ ନାହିଁ ।

ଗଦେଇ : ସବୁବେଳେତ କୁରାଢ଼ି ବେଣ୍ଟ ମିଳିବ ନାହିଁ/ ଆମ ଗାଆଁର ଆଉ କିଏ ମରିଗଲେ ତା ଶବ କେମିତି ଦାହ ହେବ ?

ନିଧିଆ : ମୁଁ ମୋ ବାପାର ଶବ ଛୁଇଁ ନିୟମ କରୁଚି, ମୁଁ ହଜାରେ ଗଛ ନଗେଇବି ।

ଗନ୍ଧିଆ : ମୁଁ ବି ହଜାରେ ଗଛ ନଗେଇବି ।

ସପନା, ଦୋଳିଆ, ମହନି : ଆମେ ସମସ୍ତେ ହଜାରେ ଲେଖାଁ ଗଛ ନଗେଇବୁ ।

(ଶପଥ କରିବା ମୁଦ୍ରାରେ ସମସ୍ତେ ଫ୍ରିଜ୍ ହୋଇଗଲେ । ମଞ୍ଚ ଧୀରେ ଧୀରେ ଅନ୍ଧକାର ହେଲା)



ଆନଂଦ ଚଂଦ୍ର ପହି

# ଅନେକ ମୁହଁ

## ନାଟକ ସମ୍ପର୍କରେ ସୂଚନା

| | | |
|---|---|---|
| ଅଭିନୟ ସମୟ | | ୬୦ ମିନିଟ୍ |
| ସେଟ ସଂଖ୍ୟା | | ଦୁଇ |
| ନାରୀ ଚରିତ୍ର | : | ଦୁଇଟି |

## ଚରିତ୍ର ସୂଚୀ

- ❑ ଦେବ ପ୍ରସନ୍ନ — ବଡ ଭାଇ । ଚାଷକାର୍ଯ୍ୟ କରନ୍ତି ।
- ❑ ହର ପ୍ରସନ୍ନ — ସାନ ଭାଇ । ଚାକିରି କରନ୍ତି ।
- ❑ ସାବିତ୍ରୀ — ଦେବ ପ୍ରସନ୍ନ ଓ ହର ପ୍ରସନ୍ନଙ୍କ ମାଆ ।
- ❑ ନମିତା — ହର ପ୍ରସନ୍ନଙ୍କ ସ୍ତ୍ରୀ ।
- ❑ ମିନୁ — ହର ପ୍ରସନ୍ନଙ୍କ ଶିଶୁ କନ୍ୟା ।

*ଆକାଶବାଣୀ, କଟକ ଦ୍ୱାରା ୧୯୮୨ ମସିହାରେ ପ୍ରସାରିତ ନାଟକ ''ଅନେକ ମୁହଁ''ର ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ :*

- ❑ ଦେବ ପ୍ରସନ୍ନ — ହାଡିବନ୍ଧୁ ସାହୁ
- ❑ ହର ପ୍ରସନ୍ନ — ପ୍ରଦୀପ୍ତ ଭୂୟାଁ
- ❑ ସାବିତ୍ରୀ — ବୀଣାପାଣି ମହାନ୍ତି
- ❑ ନମିତା — ମଂଜୁଶ୍ରୀ ପଟ୍ଟନାୟକ
- ❑ ମିନୁ : ନନ୍ଦିତା ମଂଜରୀ ରଥ

---

- ❑ ନିର୍ଦ୍ଦେଶନା : ଦାଶରଥୀ ପ୍ରସାଦ ଦାସ

# ପ୍ରଥମ ଦୃଶ୍ୟ

(ଦେବ ପ୍ରସନ୍ନଙ୍କ ଘର । ମାଟି କାନ୍ଥ, ଚାଳଛପର । ସମୟ ରାତି ନଅଟା । ସାବିତ୍ରୀ ପନିକିରେ ପରିବା କାଟୁଥିଲେ । ଦେବ ପ୍ରସନ୍ନ ଡ଼ାକି ଡ଼ାକି ପ୍ରବେଶ କଲେ ।)

ଦେବ   ବୋଉ, ବୋଉ, ଏବୋଉ !

ସାବିତ୍ରୀ   କ'ଣ କିରେ ଦେବ ?

ଦେବ   ହର କୁଆଡ଼େ ଗଲା ? କାଇଁ, ଘରେ ତ ତା ପାଟି ତୁଣ୍ଡ ଶୁଭୁନାହିଁ ।

ସାବିତ୍ରୀ   ସାଇରେ କ'ଣ ମେଳା ହଉଚି । ନିଧିଆ ଡ଼ାକିଆଇଥିଲା, ତାଆରି ସାଙ୍ଗେରେ ଯାଇଚି ।

ଦେବ   ରାତି ଆସି ଏତେ ହେଲାଣି ଆସି ନେଇଁ ? ତୁ ମନା କଲୁ ନଉଁ ? ଚାରି ଛଅ ମାସ ହେଲା ଘରକୁ ଆସି ନଥିଲା, ଆସିକି ଘରେ ଗୋଡ଼ ଦଉ ନଦଉଣୁ ଗାଆଁ ଆଡ଼େ ଚାଲି ଗଲା ?

ସାବିତ୍ରୀ   ମୁଁ ପରା ନାହିଁ କରୁଚି । ମୋ କଥା କ'ଣ ଶୁଣିଲା । କହିଲା ସାଇ ବାଲା ଡ଼ାକୁଚନ୍ତି ନ ଗଲେ କ'ଣ ଭାବିବେ ?

ଦେବ   କିଏ କ'ଣ ଭାବିବାରେ ଆମକୁ କ'ଣ ମିଳିବ ? ଧାଇଁ ଧାଇଁ କି ଭୁବନଶରରୁ ଆସିଲା । ଖାଇ ପିଇକି ଘରେ ଟିକେ ଦମ୍ଭ ନମାରି, ଏତେରାତି ଯାଏ ମେଳାରେ ବସି ରହିଲେ ଦିହ ଖରାପ ହବ ନେଇଁ ?

ସାବିତ୍ରୀ   ଆସିକି କ'ଣ ପଖାଳ ଦିଇଟା ଖାଇଥିଲା ତାକୁ ଭୋକ ହବଣି । ତୁ ଗଲୁ ତାକୁ ଡ଼ାକି ଆଣିବୁ ।

ଦେବ :   ଆଣିଲୁ ଲଣ୍ଠନଟା ଆଣ, ମୁଁ ଯାଏଁ ।

ସାବିତ୍ରୀ :   ତୋ ପୁଅ, ଝିଅ ଯୋଣ୍ଟ ଚଗଲା ହଉଚନ୍ତି ଘରେ କଣ କିଛି ରଖେଇ ଦଉଚନ୍ତି ? ମୁଁ ପଦନକୁ କଉଚି ଲଣ୍ଠନଟାର କ'

ଭଙ୍ଗା । ତୁ ସେଥିରେ ଲାଗେନା । ସିଏ କ'ଣ ମାନିଲା ? ଏକା ଜିଦ୍ କରି ଲଣ୍ଠଣଟା ନେଇ ଗୁହାଳେ ପଶି ପାଟ ବାଛୁରୀକି ପଘାରେ ବାନ୍ଧିକି ଆଣିଲା । ବାଛୁରୀ ମୁଣ୍ଡ ହଲେଇ ଦେଲା ଯେ ଲଣ୍ଠନ କାଚଟା ଭାଙ୍ଗି ଚୁନ୍‌ଚୁନା ହେଇଗଲା ।

ଦେବ — କୁଆଡ଼େ ଗଲା ସେ ବଦ୍‌ମାସ ? ପଦନ ! ଏ ପଦନ !

ସାବିତ୍ରୀ — କୁଆଡ଼େ ଆଉ ଯିବ ? କାନ୍ଦି କାନ୍ଦିକି ଶୋଇଚି । ମୁଁ ଯେତିକି ଗାଳି ଦେଲି, ମାରିଲି ତା ମାଆ ସେତିକି ଗାଳି ଦେଇଚି ମାରିଚି ।

ଦେବ — ତୋ ଯୋଗୁ ଛୁଆ ଗୁଡ଼ାକ ସବୁ ଚଗଲା ହେଇଗଲେ ।

ସାବିତ୍ରୀ — ତୋ ଛୁଆ ଗୁଡ଼ାକ ଭାରି ଭଲ, ଗୋଟିପଣି ତୁଳସୀ ଥିଲେ ଆଉ ମୋ ବିଛୁଆତି ହାତ ନାଗିକି ସବୁ ଖରାପ ହୋଇଗଲେ, ନୁହେଁ ?

ଦେବ — ନୁହେଁ ଆଉ କ'ଣ ? ତୁ ଗେଲବସର କରି ସେଗୁଡ଼ାକୁ ନଷ୍ଟ କରିଦେଲୁ ।ସବୁ କଥାରେ ଅଳି ଅଝଟ । ପାଠ ପଢ଼ାରେ ନାଆଁ ନାହିଁକି ଗାଆଁ ନାହିଁ ।

ସାବିତ୍ରୀ — ଦୋଷଟା ଖାଲି ମୋର ହେଇ ଗଲା ?

ଦେବ — ଆଉ କାହାର?

ସାବିତ୍ରୀ — ତୁତ ସକାଳୁ ବାହାରି ଯାଉଚୁ ବିଲ ବାଡ଼ି କାମରେ ଆସୁଚୁ ରାତି ଘଡ଼ିକୁ । ତୁ ଗଲାବେଳେକୁ ସେମାନେ ଶୋଇଚନ୍ତି, ତୁ ଆସିବା ବେଳକୁ ସେମାନେ ଶୋଇଚନ୍ତି । ତାଙ୍କୁ ମଣିଷ କରିବ କିଏ ?

ଦେବ — କାଇଁକି ସେମାନେ କ'ଣ ସ୍କୁଲକୁ ଯାଉନାହାଁନ୍ତି ?

ସାବିତ୍ରୀ — ଖାଲି ଇସ୍କୁଲୁକୁ ଗଲେ କ'ଣ ହବ ? କାହାର ବହି ନାହିଁତ କାହାର ଖାତା ନାହିଁ । କଲମ ନାହିଁତ କାଳି ନାହିଁ । ଇସ୍‌କୁଲ ମାଷ୍ଟର କ'ଣ ତୋ ଛୁଆକୁ ଏସବୁ ତା ହାତରୁ ଦେଇ ପାଠ ପଢ଼େଇବ ? ଅଧାଦିନ ସେମାନେ ଇସିକୋଲ ନଯାଇ ବୁଲୁଚନ୍ତି ।

ଦେବ — କିଲାସ ଉଠା ପରେ ହର ସମସ୍ତଙ୍କ ପେଇଁ ବହି, ଖାତା, କଲମ, କାଳି ଆଣିଥିଲା । ସେସବୁ କ'ଣ ହେଲାକି ?

ସାବିତ୍ରୀ ସାତ ଆଠ ମାସ ତଳେ ପଠେଇ ଥିଲା । ମଦନର କ'ଣ ଗୋଟେ ଦିଇଟା ବହି ନଅଣ୍ଟ ହେଲା । ସିଏ ସବୁଦିନ କଉଚି ତୁ କ'ଣ ଶୁଣି ନଉଁ ? ତାର ଗୋଟେ ପେଣ୍ଟ, ଗୋଟେ କମିଜି । ତା କମିଜିରେ କ'ଣ ଖୁଣ୍ଟ ନାଗି ଯାଇ ଏଡ୍ଡେ ପୁଳେ ଚିରି ଯାଇଚି । କ'ଣ ପିନ୍ଧିକି ସିଏ ଇସିକୋଲ ଯିବ ?

ଦେବ ଦରଜୀ ପାଖରେ ସିଲେଇ କରେଇ ଆଣୁ ନେଇଁ ?

ସାବିତ୍ରୀ ସିଲେଇ କରେଇ କି ଆଣିଥିଲା, ସେଟା କ'ଣ କୁଟା ହେଇଗଲା । ସେଟାକୁ ପିନ୍ଧିବାକୁ ସିଏ ଆଉ ମୋଟେ ମଙ୍ଗୁନେଇଁ ।

ଦେବ ଆଉ ପୁନି, ଟୁନିଙ୍କର କ'ଣ ହେଇଚି ?

ସାବିତ୍ରୀ ଆଜି କାଲି କ'ଣ ଗୋଟେ ଜାମା ପିନ୍ଧୁଚନ୍ତି ତଳେ ଫାଳେ, ଉପରେ ଫାଳେ ପୁନିର ସେଇଟା ନାହିଁ । ଅଧା ଦିନ ଗଷିକି ଶୋଉଚି ।

ଦେବ ଆଉ ଟୁନିର ?

ସାବିତ୍ରୀ ତାର ସିଲଟ ମାସେ ହେଲା ଭାଙ୍ଗି ଗଲାଣି । ତାର ଗୋଟେ ନୂଆ ସିଲେଟ ନହେଲେ ଇସିକୋଲ ଯିବ ନେଇଁ ବୋଲି ଧମକେଇ ଧମକେଇ ଗଲା ବୁଧବାରଠୁ ଆଉ ଯାଉ ନେଇଁ । ତୁ ଘରେ ରହନ୍ତୁ କି ତୋ ଛୁଆଙ୍କ ନବରଙ୍ଗ ବୁଝନ୍ତୁ । ସିଏ ଯାହା ହଉଚନ୍ତି ଭଲ ମଣିଷର ମୁଣ୍ଡ ଖରାପ କରିଦେବେ । ଆଜି କଥା ଶୁଣିବୁ ?

ଦେବ କ'ଣ ହେଇଚି ?

ସାବିତ୍ରୀ ହର ତୋ ପେଇଁ ଯୋଉ କମିଜି କନାଟା ଆଣିଚି, ସେଇଟାକୁ ଧରି ତୋ ପୁଅଝିଅ ଚାରିଜଣ ଯାକ ବାଡ଼ିଆ ପିଟା । ଇଏ କହୁଚି ମୋର ଏଥିରେ କାମିଜି ହବ, ଆଉ ସିଏ କହୁଚି ମୋର ଏଥିରେ ଜାମା ହବ । ତା ବୋଉ ଯେତେ କହିଲା ନାଇଁ ଏଇଟା ତମ ପେଇଁ ନୁହଁ । ତମ ବାପାଙ୍କ ପାଇଁ ଦାଦା ଆଣିଚନ୍ତି । ତାଙ୍କର କାମିଜି ହବ । ତୋ ଛୁଆ ଓଲଟି କହିଲେ ବାପାକ'ଣ ଇସିକୋଲ ଯାଉଛନ୍ତି ? ତାଙ୍କର କାମିଜି କ'ଣ ହବ ? ତାଙ୍କରତ ନୁଗା, ଗାମୁଛା ଅଛି ।

ଦେବ ସେମାନେ ଠିକ୍ କହିଚନ୍ତି । ମୋର କାମିଜି କ'ଣ ହବ ?

ସାବିତ୍ରୀ କୁଆଡ଼େ ଯିବା ଆସିବାକୁ ରଖିବୁ ନେଇଁ ? ହର ପରା ତତେ ଫି ଥର ଡ଼ାକୁଚି ଭୁବନେଶ୍ୱର ଯାଇ ବୁଲିଆସିବା ପେଇଁ । କାମିଜି ନାହିଁ, ଏମିତି ଅଭେକା ହେଇ ସେଠିକି ଯିବୁ କେମିତି ?

ଦେବ : ହରର ପୁରୁଣା କାମିଜି ଗୋଟେ ହେଲେ ମୋର କାମ ଚଳିଯିବ । ସେ କନାରେ ଛୁଆଙ୍କର ଜାମା କରିଦିଅ ।

ସାବିତ୍ରୀ ଆଉ ଅଛି ଯେ ହବ ?

ଦେବ ନାହିଁ ?କୁଆଡ଼େ ଗଲା ?

ସାବିତ୍ରୀ : ଚାରିହେଁ ଟଣା ଟଣି କରି ଗୋଟେ କଡ଼ରୁ ଚାରି ଆଙ୍ଗୁଳି ଚିରି ଦେଇଚନ୍ତି ।

ଦେବ ଟିକେ ଚିରି ଯାଇଚି, ସେଥିରେ କ'ଣ ଜାମା ହବ ନେଁଇଁ ?

ସାବିତ୍ରୀ ହବ କି ନାହିଁ ଦରଜୀକି ନେଇକି ଦେଖା ।
(ବାହାରୁ ହର ପାଟି ଶୁଭିଲା)

ହର ବୋଉ ! ଏବୋଉ !

ଦେବ ବୋଉ ! ହର ଆସିଲାଣି । ବାହାରେ ଅନ୍ଧାର ହେଇଚି ଡ଼ିବିରିଟା ଟିକେ ଦେଖା ସିଏ ଆସୁ ।

ସାବିତ୍ରୀ ହର ! ସେଇଠି ଠିଆ ହ, ମୁଁ ଆଲୁଅ ନେଇକି ଯାଉଚି ।
(ଶାଢ଼ି କାନିରେ ଘୋଡ଼େଇ ଡ଼ିବିରି ନେଇକି ଗଲେ ଓ ହରକୁ ଆଲୁଅ ଦେଖାଇ ଘରକୁ ଆସିଲେ)
ଅନ୍ଧାରଟାରେ କେମିତି ଆଇଲୁ ? ନିଧିଆକୁ କଇଲୁ ନଉଁ ଲଣଠଣରେ ଆମ ଘରେ ଛାଡ଼ି ଦେଇ ଯାଇ ଥାଆନ୍ତା ?

ହର ନାଇଁ, ମୁଁ ସେମିତି ଚାଲି ଆଇଲି ।
(ଭାଇଙ୍କୁ ପାଦ ଛୁଇଁ ନମସ୍କାର କଲା)

ଦେବ (ପ୍ରତି ନମସ୍କାର ଜଣାଇ) ଏତେ ରାତିଯାଏ ଗାଆଁ ଭିତରଟାରେ କ'ଣ କରୁଥିଲୁ ? ମେଳା କ'ଣ ଏପର୍ଯ୍ୟନ୍ତ ସରି ନଥିଲା ?

ହରର ; ଆମ ସାଗଛୁଆ ଭଲ କୀର୍ତ୍ତନ କରୁଚନ୍ତି । ପରିଆ ଦାଦାଙ୍କ ପୁଅ ମହନି ବାର ତେର ବରଷର ଛୁଆଟେ, କି ସୁନ୍ଦର ମୃଦଙ୍ଗ ସିଏ ବଜଉଚି !

ସାବିତ୍ରୀ ଆମ ପଦନ ଫି ରଇବାରେ କୀର୍ତ୍ତନ ଶିକିବାକୁ ଠାକୁର ଘରକୁ ଯାଉଚି ।

ଆନଂଦ ଚଂଦ୍ର ପହି

ଦେବ ସେଇଟା ଦେଇ କିଛି ହବ ନେଇଁ । ଚାରିମାସ ଗଲାଣି ଏ ପର୍ଯ୍ୟନ୍ତ ଗିନି ବଢେଇ ଆସୁନେଇଁ ।

ହର ପିଲାମାନେ କ'ଣ ଶୋଇପଡ଼ିଲେଣି ? କାଇଁ କାହାରି ପାଟି ଶୁଭୁ ନାହିଁ ।

ସାବିତ୍ରୀ ଏଇ ଟିକକ ଆଗରୁ ରାମ ରାବଣ ଯୁଦ୍ଧ କରି ଶୋଇଛନ୍ତି ।

ହର କ'ଣ ହେଲା ? କଳି କାଇଁକି ଲାଗିଲେ ?

ଦେବ ତାଙ୍କ କଳିରୁ ତୁ କଣ ପାଇବୁ ? ବସ୍, ଏଇଠି ବସ୍ ।

(ଦେବ ପାଖରେ ହର ବସିଲା)

ଛୁଆ ଦଇଟାଙ୍କୁ କେତେ ଦିନହେଲା ଦେଖିନେଇଁ ଟିକେ ସାଙ୍ଗେ ଆଣିଲୁ ନଉଁ ?

ସାବିତ୍ରୀ ଗଲା ବରଷ ଦଶରା ଛୁଟିକି ଯାଇଁକି ତୋ ପୁଅ, ଝିଅ ଦିହିଁକି ଦେଖିଥିଲି । ଆର ମାସରେ ଚିନୁ, ମିନୁଙ୍କୁ ଆଣିବୁ ।

ହର ସେମାନେତ ଗାଆଁକୁ ଆସିବାକୁ ସବୁବେଳେ ଗୋଡ଼ଟେକି ବସିଛନ୍ତି । ଭୁବନେଶ୍ୱରରେ ଆମ ପଡ଼ିଶାଘର ପିଲାଙ୍କ ଆଗରେ ଆମ ଗାଆଁ କଥା, ଆମ ଘରକଥା , ଆମ ବିଲ, ବାଡ଼ି, ଆମ୍ବ ତୋଟା କଥା ସବୁବେଳେ ଗପୁଚନ୍ତି ।

ଦେବ ତୁ ତାଙ୍କୁ ସାଙ୍ଗରେ ଆଣୁନଉଁ ?

ସାବିତ୍ରୀ ଛୁଆ ଦିଇଟାଙ୍କୁ ଆଣିଥିଲେ କେତେ ଏମିତି ଗାଡ଼ିଭଡ଼ା ପଡ଼ିଥାଆନ୍ତା ?

ହର ଗାଡ଼ିଭଡ଼ାରେ କ'ଣ କଥା ଅଛି ?

ସାବିତ୍ରୀ ଆଉ ତାଙ୍କୁ ତୁ କାଇଁକି ଆଣୁନଉଁ ?

ହର ଗାଆଁକୁ ଆସିଲେ ତାଙ୍କ ପାଠପଢ଼ା ମାରା ହବ । ଆଉ ଗାଡ଼ିମଟର ଭିଡ଼ରେ ଛୁଆ ଦିଇଟାଙ୍କୁ ଆଣିବା ମହାକଷ୍ଟ । ଗାଆଁରେ ପହଞ୍ଚିଲା ବେଳକୁ ସେମାନେ ଅଧାପ୍ରାଣ ହୋଇ ଯାଇଥିବେ ।

ସାବିତ୍ରୀ ତାହାଲେ ତୋ ଛୁଆଙ୍କର ଗୋଟେ ଫଟ ଉଠେଇ ମତେ ଦିଅନ୍ତୁ ନେଇଁ ? ତାଙ୍କୁ ତ ସବୁଦିନ ଦେଖି ହଉନେଇଁ ତାଙ୍କ ଫଟ ଦେଖନ୍ତି ।

ହର ମୁଁ ଆରଥର ଆସିଲା ବେଳକୁ ଫଟ ଆଣିବି ।

ଆନଂଦ ଚଂଦ୍ର ପହି

ଦେବ — ବୋଉ ତୁ ଗଲୁ ବଢ଼ାବଢ଼ି କରିବୁ, ହରକୁ ଭୋକ ହବଣି ।

ସାବିତ୍ରୀ — ତମେ ଦିହେଁ ବସିକି ଗପସପ ହଉଥା, ମୁଁ ବଡ଼ବୋହୂକୁ କହୁଛି ସିଏ ଭାତ ବାଢ଼ିବ । (ପ୍ରସ୍ଥାନ)

ହର — ଭାଇ ! ନବଘନ ଘର ଆଉ କେତେ ଟଙ୍କା ବାକି ଅଛିକି ?

ଦେବ — କାଇଁକି ? ସିଏ ତତେ ଟଙ୍କା ମାଗୁଥିଲା କି ?

ହର — ହଁ । ମେଳା ପାଖରେ ପଚାରୁଥିଲା ।

ଦେବ — ଏତେ ଲୋକରେ ନବଘନ ତତେ ଟଙ୍କା ମାଗିଲା ?

ହର ; ନାଇଁ, ଏମିତି ଖାଲି ପଚାରୁଥିଲା ।

ଦେବ — କ'ଣ ପଚାରିଲା ?

ହର — ଏଇ ଏମାସରେ ମୁଁ କେତେ ଟଙ୍କା ଘରକୁ ଦଉଚି ସେଇକଥା ପଚାରୁଥିଲା ।

ଦେବ — ଏ ଲୋକଗୁଡ଼ାଙ୍କର ଥାନ ଅଥାନ ଜ୍ଞାନ ନାହିଁ । ଟଙ୍କା କେଇଟା ରହିଯାଇଚି ବୋଲି ଯୋଉଠି ପାରି ସେଠି ମାଗିବ ? ଆମର କ'ଣ ମାନ, ଇଜ୍ଜତ ନାହିଁ ?

ହର — ଏତେ କଥାରୁ କ'ଣ ମିଳିବ ? ତାଙ୍କ ଟଙ୍କା ଶୁଝିଦେଲେ ଗଲା । ତାଙ୍କର ଆଉ କେତେ ଟଙ୍କା ବାକି ଅଛି ?

ଦେବ — ଆଉ ଟଙ୍କା ହଜାରେ ଅଛି । ତୁ ବେସ୍ତ ହୋନା, ମୁଁ ଏଇ ହାଟ ପାଳିରେ ଆମର ସେ କସରା ଦାମୁରିଟାକୁ ବିକିକି ତା ପଇସା ଶୁଝି ଦେବି ।

ହର — ଆଉ କାହାର ନାହିଁ ?

ଦେବ — ତୁ ସେଥିରୁ କ'ଣ ପାଇବୁ ? ଏ ବର୍ଷ ଧାନ ଅମଳ ହେଲେ ଯାହାର ଯାହା ଅଛି ମୁଁ ସବୁ ଶୁଝି ଦେବି ।

ହର — ପ୍ରତି ବର୍ଷତ ମରୁଡି ନହେଲେ ବାତ୍ୟାରେ ଫସଲ ନଷ୍ଟ ହଉଚି ଏବର୍ଷ କ'ଣ ହବ କିଏ କହିବ ?

ଦେବ — ନାଇଁ ଏ ବରଷ ଗଙ୍ଗା ବେଉଷଣ ହେଇଚି । ଇନ୍ଦର ରଜା ପାଳିଲେ ଭଲ ଫସଲ ହବ ।

ହର — ଜମି ବୋଲିତ ମାତ୍ର ଚାରି ଏକର । ସବୁ ପୁଣି ଢ଼ିପ । ଭଲ ଫସଲ ହେଲେବି କେତେ ଏମିତି ଫଳିବ ଯେ ସେଥିରୁ ବର୍ଷଙ୍କ ଭାତ ଖାଇବ ଆଉ ମହାଜନ ଦେଣା ଶୁଝିବ ?

| | |
|---|---|
| ଦେବ | ଏ ବରଷ ଅଧିକ ମାଣେ ବିଲ ମୁଁ ଭାଗରେ କରିଚି । |
| ହର | ସିଏ ଏମିତି କେତେ ହବ ? |
| ଦେବ | ଯାହା ଯେତିକି ହବ ଦେଖିବା, ତୁ ବେସ୍ତ ହୋନା । ଜ୍ୟୋତି ବାହାଘରକୁ ତୁ ପରା ଭୁବନେଶରରୁ କେତେ ନାଗିଁ କେତେ ଧାର, କରଜ କରିଚୁ । ଏଠିକି ସବୁବେଳେ, ସବୁକାମରେ ଟଙ୍କା ଦେଲେ ତୁ ଛୁଆ ପିଲା ଧରି ବଜାର ସହର ଜାଗାରେ କେମିତି ଚଳିବୁ ? |
| ସାବିତ୍ରୀ | (ପ୍ରବେଶି) ଭାତ ବଢ଼ା ହେଲାଣି ଖାଇବ ଆସ । |
| ଦେବ | ଆ, ଖାଇବା ଆ । |
| | (ତିନି ଜଣଙ୍କର ରୋଷେଇ ଘର ଆଡକୁ ପ୍ରସ୍ଥାନ) |



# ଦ୍ୱିତୀୟ ଦୃଶ୍ୟ

(ଦେବ ପ୍ରସନ୍ନଙ୍କ ସେଇ ମାଟି ଘର । ଭୋର ସମୟ । କୁକୁଡା ରଡି ଶୁଭୁଛି । ହର ପ୍ରସନ୍ନ ଭିଡି ମୋଡି ହୋଇ ହାଇ ମାରି ନିଦରୁ ଉଠିଛି । ବିଛଣାରେ ବସି ବୋଉକୁ ଡାକିଛି ।)

ହର — ବୋଉ ! ଏ ବୋଉ ! ଦାନ୍ତ କାଠି ଖଣ୍ଡେ ଦେଲୁ ।

ସାବିତ୍ରୀ — (ପ୍ରବେଶି) ରାତି ଭଲକି ପାହିଁ ନେଇଁ ଆଉ ଟିକେ ଶୋଇପଡ ।

ହର — (ଭିଡି ମୋଡି ହୋଇ) କେତେ ଫରଚା ହେଇ ଗଲାଣି, ରାତି ପାହିନେଇଁ ବୋଲି କ'ଣ କହୁଚୁ ? ସାତଟା ବେଳକୁ ତରଭା ଛକରୁ ବସ ଧରିବାକୁ ପଡିବ । ଏଠୁ ତରଭା ଛକ ତିନି/ଚାରି କିଲୋମିଟର ଦୂର । ଟଞ୍ଚକ ନଗଲେ ବସ ଫେଲ୍ ହେବି ।

ସାବିତ୍ରୀ — ଆଜି ଦିନଟା ରହି ଯାଉନଉ ?

ହର — ନାଇଁ, ତୁ ଦେଲୁ ଦାନ୍ତକାଠି ଦେଲୁ ।

ସାବିତ୍ରୀ — ସେଇଠି ଝରକା ଦାଢ଼ରେ ଥୁଆ ହେଇଚି, ହେଇନେ । ତୁ ଆଜି ନଗଲେ କ'ଣ ଏମିତି ଅସୁବିଧା ହୁଅନ୍ତା ?

ହର — ଅଫିସ୍‌ରେ ଏତେ କାମଯେ ମୁଁ ଯେତେ କହିଲି ଆଉ ଦିନଟେ ଛୁଟି ଦିଅ ବୋଲି ଆମ ଅଫିସର୍ ରାଜି ହେଲେ ନାହିଁ । (ଝରକାରେ ଛେପ ପକାଇଲେ)

ସାବିତ୍ରୀ : ତୁ ଏମିତି ଆସୁ କାଇଁକି ? ସଂଜ ବୁଡକୁ ଆସିବୁ, ରାତି ଅଧଯାଏ ଗାଆଁ ଭିତରେ ପଶିବୁ ଆଉ ରାତି ନପାହୁଣୁ ତରତର ହବୁ ଯିବାକୁ । ଦିନଟେ ରହିଗଲେ କିଏ ଏମିତି ଫାଶି ଦେଇ ଦଉଚି ?

ହର — (ଦାନ୍ତ ଘସିସାରି ମୁହଁ ଧୋଇ କୁଳି ପକାଇ ସାରି ସାବିତ୍ରୀଙ୍କ ଶାଢ଼ି କାନିରେ ମୁହଁ ପୋଛୁ, ପୋଛୁ) କହିବୁ ଯଦି ଆଉ ଏମିତି ଆସିବି ନେଇଁ । ଯୋଉ ଦିନ ମତେ ଆଠ ଦିନ ଛୁଟି ମିଳିବ

| | |
|---|---|
| | ସେଇଦିନ ଯାଇଁ ଆସିବି । |
| ସାବିତ୍ରୀ | ତତେ ପାରି ହବ ନେଇଁ । ତୋ ମନ ଯାହା ହଉଚି କର । |
| ହର | ତୁ ମୋ ଲୁଙ୍ଗି ଟାଉଏଲ୍ ଦିଖଣ୍ଡ ବ୍ୟାଗରେ ପୂରେଇଲୁ । |
| ସାବିତ୍ରୀ | ତୁ କ'ଣ କିଛି ନଖାଇବି ଓପାସ ଯିବୁ ? |
| ହର | ଏତେ ସକାଳୁ କିଛି ଖାଇବାକୁ ଇଛା ହଉ ନେଇଁ । |
| ହର | ମୁଁ ବାଟରେ ଜଳଖିଆ ଖାଇ ନେବି । |
| ସାବିତ୍ରୀ | ନାଇଁ, ନାଇଁ ପାଟିରେ କିଛି ଦିଇଟା ନପକାଇ ଘରୁ କ'ଣ ଯାଆନ୍ତି ? |
| ହର | ହଉ, ଯାହା ଆଣୁଚୁ ଚଞ୍ଚଳ ଆଣ । |
| ସାବିତ୍ରୀ | (ଘର ଭିତରକୁ ଗଲେ) |
| | (ହର ପାନିଆରେ ମୁଣ୍ଡ କୁଣ୍ଡେଇଲା । ପ୍ୟାଣ୍ଟ, ସାର୍ଟ ପିନ୍ଧିଲା) |
| ସାବିତ୍ରୀ | (ଗୋଟିଏ ହାତରେ ବେଲାରେ ଚୁଡା, ଗୁଡ ଜଳଖିଆ ଓ ଆର ହାତରେ ଗୋଟେ କଂସା ଗ୍ଲାସରେ ପାଣି ଆଣି ପ୍ରବେଶ ।) ନେ, । ଖାଇଦେ । ଆରେ ଚୁଡାଦିଟା ଫୁଲିଯିବ ପରା । |
| ହର | (ପିନ୍ଧା ପିନ୍ଧି ସାରି ଖାଇବାକୁ ବସିଲେ । ଖାଉ ଖାଉ) ଭାଇ କୁଆଡେ ଗଲେ ? ଉଠି ନାହାଁନ୍ତି କି ? |
| ସାବିତ୍ରୀ | ସିଏ କେତେବେଳୁ ଉଠି ବିଲକୁ ଗଲାଣି ? |
| ହର | ତାଙ୍କ ସାଙ୍ଗରେ ଦେଖା ହବ ନେଇଁ ତା ହେଲେ ? |
| ସାବିତ୍ରୀ | ଦେବ କହିଯାଇଚି - ମୁଁ ଆସିବା ଯାଏଁ ହରକୁ ଅଟକେଇ ଥିବୁ, ମୁଁ ବିଲରୁ କାଙ୍କଡ ଆଣିବି । |
| ହର | ଭାଇ କେତେବେଳେ ଆସିବେ ? |
| ସାବିତ୍ରୀ | ସାଧିଆ ବେଳ ହବ । |
| ହର | (ଖାଉ ଖାଉ) ଭାଇ ଆସିବା ପର୍ଯ୍ୟନ୍ତ ମୁଁ ରହିପାରିବି ନେଇଁ । ତାଙ୍କୁ କହିଦବୁ, ଆରଥର ଆସିଲେ ମୁଁ କାଙ୍କଡ ନେବି । ଏଥର ଘରେ ଖାଇ ଦେବ । |
| ସାବିତ୍ରୀ | ତୁ ଖାଉ ନଉଁ, ହାତ ଟେକିକି ବସିଲୁ କାଇଁକି ? |
| ହର : | ନା, ଆଉ ଖାଇ ପାରିବି ନେଇଁ । ଆଉ ପେଟରେ ଜାଗା ନାହିଁ । |
| ସାବିତ୍ରୀ | ଅଧା ଖାଇ ନଉଁ ପେଟ ପୂରି ଗଲାଣି । |
| ହର | (ସାର୍ଟ ଟେକି ପେଟ ଦେଖାଇଲେ) ଦେଖୁନୁ ମୁଁ କ'ଣ ମିଛ |

କହୁଚି ?

ସାବିତ୍ରୀ ହଉ ତାହେଲେ ପାଣି ପିଇ ।

ହର (ପାଣି ପିଇସାରି) ଯା ମୋ ବ୍ୟାଗଟା କୋଉଠି ରଖିଲୁ ଆଣ ।

ସାବିତ୍ରୀ (ଘର ଭିତରକୁ ଯାଇ ଦିଇଟା ଫୁଲ୍‌ଲୋଡ ବ୍ୟାଗ ଟେକି ଟେକି ଆଣିଲେ ।)

ହର ସେ ବ୍ୟାଗ୍‌ରେ ଏତେ ସବୁ କ'ଣ ?

ସାବିତ୍ରୀ : କିଛି ନାହିଁ । (ହସିଲେ)

ହର (କୃତ୍ରିମ ରାଗ ପ୍ରକାଶ କରି) ମୁଁ ଏତେ ଗୁଡେ ନେଇ ପାରିବି ନେଇଁ ।

ସାବିତ୍ରୀ ଦେଖୁ ନଉଁ ବେଗ ଦିଇଟା ଜମା ଓଜନ ନାହିଁ ।

ହର ମୁଁ ଦେଖିବା ଦରକାର ନାହିଁ, ମୁଁ ଏତେ ସବୁ ନେଇ ପାରିବି ନେଇଁ ।

ସାବିତ୍ରୀ ତୁ ଟେକିକି ଦେଖୁ ନଉଁ କେତେ ଓଜନ ଅଛି ?

ହର ତୁ କହିଲୁ ଦେଖି ସେ ବ୍ୟାଗରେ କ'ଣ କ'ଣ ଅଛି ?

ସାବିତ୍ରୀ ଏ ବେଗ୍‌ରେ ବଡି ଦିଇଟା, ବିରି ଦି'ମାଣ, ପାଣି କଖାରୁ ଗୋଟେ, କଦଳୀ ଦି' ଫେଣା ଆଉ ବାଇଗଣ ଦିଇଟା ।

ହର ଆଉ ଆର ବ୍ୟାଗ୍‌ରେ ?

ସାବିତ୍ରୀ ପିଜୁଳି ଦି ପୁଞ୍ଜା, ଅରୁଆ ଚାଉଳ ଚାରିସେରେ, ଖଇଧାନ ଗଉଣିଏ ଆଉ ଲଙ୍କା ମରିଚ ଦିଇଟା ।

ହର (ବ୍ୟାଗ୍‌ରୁ ଗୋଟେ ଚିପିଲେ) ଆଉ ଏଗୁଡା କ'ଣ ଗୋଳ ଗୋଳ ଗୋଡି ପରି ହାତକୁ ଲାଗୁଚି ?

ସାବିତ୍ରୀ ସେଗୁଡା ଆମ କୂଅମୂଳ ଗଛର ବର କୋଳି ।

ହର ମୁଁ ଏତେ ଗୁଡେ ଜିନିଷ ବୋହିକି ନେଇ ପାରିବି ନେଇଁ ।

ସାବିତ୍ରୀ ବାଡି ବଗିଚାର ଫଳମୂଳ ଦିଇଟା, ଛୁଆ ଖାଇକି ଖୁସି ହେବେ । ନାହିଁ କରନା ବାପ, ନେଇଯା ।

ହର ଅଧା, ଅଧା ଏଥିରୁ କାଢ଼ି ଦେ । ମୁଁ ଏତେ ନେଇ ପାରିବି ନେଇଁ ।

ସାବିତ୍ରୀ କେତେ ଏମିତି ଯେ ନେଇ ପାରିବୁ ନେଇଁ ?

ହର ଦେ, ଦେ । ତୋ ସାଙ୍ଗରେ ଏମିତି ଯୁକ୍ତି ତର୍କ କରୁ କରୁ

| | |
|---|---|
| | ସିଆଡେ ମୁଁ ବସ ଫେଲ୍ ହେବି । |
| ସାବିତ୍ରୀ | ନେ । (ବ୍ୟାଗ ଦୁଇଟା ହର ପ୍ରସନ୍ନଙ୍କ ହତାକୁ ବଢ଼ାଇ ଦେଲେ) |
| ହର | (ବ୍ୟାଗ ଧରି ଯିବାକୁ ବାହାରିଲେ) |
| ସାବିତ୍ରୀ | ଆଉ କେବେ ଆସିବୁ ? |
| ହର | ମୁଁ ଏଯାଏ ଯାଇ ନେଇଁ, ଆଉ ପୁଣି ଆସିବା କଥା କହିବି କେମିତି ? |
| ସାବିତ୍ରୀ | ଆର ମାସ ପହିଲା ବେଳକୁ ଦି' ଦିନ ଛୁଟି ଆଣିକି ଆସିବୁ । |
| ହର | ଦେଖିବା । |
| ସାବିତ୍ରୀ | ଆସିଲା ବେଳେ ଛୁଆଙ୍କ ଫଟ ଆଣିବୁ । |
| ହର | ହଉ । |
| ସାବିତ୍ରୀ | ଭୁବନେଶ୍ୱରରେ ପହଞ୍ଚି ଚିଠି ଦେବୁ । କେମିତି ପହଞ୍ଚିଲୁ ଲେଖିବୁ । |
| ହର | ହଁ । |
| ସାବିତ୍ରୀ | ଏଠିତ କିଛି ଖାଇଲୁ ନାହିଁ, ବାଟରେ ଦ'ଣ ଦିଟା ଖାଇଦବୁ । |
| ହର | ତୁ ବ୍ୟସ୍ତ ହୋନା, ମୁଁ ଖାଇନେବି । |
| ସାବିତ୍ରୀ | ଚିଠି ଦବୁ ? |
| ହର | ହଁ ଦେବି । |
| | (ହର ପ୍ରସନ୍ନ ସାବିତ୍ରୀଙ୍କ ପାଦ ଛୁଇଁ ପ୍ରଣାମ କରି ଚାଲିଗଲେ । ସାବିତ୍ରୀ ତାଙ୍କ ଯିବା ବାଟକୁ ଅନେଇଁ ଠିଆ ହେଲେ ।) |



ଆନଂଦ ଚଂଦ୍ର ପହି

# ତୃତୀୟ ଦୃଶ୍ୟ

(ହର ପ୍ରସନ୍ନଙ୍କ ଭୁବନେଶ୍ୱରସ୍ଥ ସରକାରୀ ବାସଭବନ । ନିମ୍ନଧରଣର କୋଠା ଘର । ହର ଗାଆଁରୁ ଫେରିଲେ । ଦୁହେଁ ଗାଆଁ କଥା ଆଲୋଚନା କରୁଥିଲେ ।)

ନମିତା   ଗାଆଁରେ ସମସ୍ତଙ୍କ ଦେହପା ଭଲ ଅଛିତ ?

ହର   ହଁ ।

ନମିତା   ବୋଉଙ୍କ ଦେହ ଭଲ ଅଛି ?

ହର   ହଁ ।

ନମିତା   ଘରେ ଆଉ କେତେ ଦିନକୁ ଚାଉଳ ଅଛି ?

ହର   ବୋଉ କହୁଥିଲା ଆଉ ପନ୍ଦର/କୋଡ଼ିଏ ଦିନ ଯିବ ।

ନମିତା   ତାପରେ କ'ଣ କରିବେ ? ନୂଆ ଫସଲ ହେବାକୁତ ଆହୁରି ଅନେକ ଦିନ ବାକି ଅଛି ।

ହର   ଆହୁରି ଅନେକ ଦିନ ମାନେ ? ଧାନତ ଏବେ ବେଉଷଣ ହେଉଛି । ଧାନ ଅମଳ ଆହୁରି ପାଞ୍ଚ/ଛଅ ମାସ ଆଗକୁ ଅଛି ।

ନମିତା   ଏତେ ଦିନ ପୁଣି କେମିତି କ'ଣ ହବ ?

ହର   କ'ଣ କେମିତି ହବ ତମେ କହୁନା ?

ନମିତା :   ମୁଁ କ'ଣ କହିବି ?

ହର   ନମିତା ! ତମ ହାତରେ ସବୁକଥା ।

ନମିତା   ମୋ ହାତରେ ସବୁକଥା ?

ହର   ନୁହେଁ ଆଉ କ'ଣ ?

ନମିତା   କେମିତି ?

ହର   ତମେତ ଜାଣିଚ ଭାଇଙ୍କର ଆଉ କିଛି ରୋଜଗାର ନାହିଁ । ଯାହା ରୋଜଗାର କେବଳ ଚାଷରୁ ।

ନମିତା   ହଁ ଯେ....

| | |
|---|---|
| ହର | ତାଙ୍କର ଯାହା ନିଅଣ୍ଟ ହବ ଆମେ ନଦେଲେ ସିଏ କୋଉଠୁ ଆଣିବେ ? |
| ନମିତା | ତାଙ୍କୁ ଦବାକୁ ମୁଁ କ'ଣ ମନା କଲି ? |
| ହର | ଘରକୁ ଦେବାକୁ ତୁମେ କେବେ ନାହିଁ କରିନା ଯେ... |
| ନମିତା | ପୁଣି ଯେ କ'ଣ ? |
| ହର | ମୁଁ ଯାହା ଗାଆଁକୁ ଦେଉଚି ତୁମେ ଚାହିଲେ ତାଠୁ ଅଧିକ ଦେଇ ହୁଅନ୍ତା । |
| ନମିତା | ମୋ ଚାହିବା ନଚାହିବାରେ କ'ଣ ଅଛି ? ଯାହା ଠିକ୍ ଭାବୁଛ ତମେ କର । |
| ହର | ଅଭାବ ଭିତରେ ସବୁ ଠିକ୍ କଥା କରି ହେଉଚି କୋଉଠି ? ଠିକ୍ ନୁହଁ କି ଭୁଲ୍ ନୁହଁ ଏମିତି ଗୋଟିଏ ମଝି ମଝିଆ ବାଟରେ ଚାଲିବାକୁ ହେଉଛି । ଏଠି ତୁମକୁ ଆଉ ପିଲାମାନଙ୍କୁ ଯେତିକି ସୁବିଧା ସୁଯୋଗ ଦେଇ ଚଳେଇବା କଥା ତାହା ଦେଇ ପାରୁ ନାହିଁ । ଗାଆଁକୁ ଯେତିକି ଟଙ୍କା ଦେଲେ ସେମାନେ ଯାହି ତାହି ଚଳି ଯାଆନ୍ତେ ସେତକ ବି ପଠେଇ ହଉ ନେଇଁ । |
| ନମିତା | ଭୁଲ୍ ଆଉ ଠିକ୍ ମଝିରେ ବାଟ ଆଉ କାହିଁ ? |
| ହର | ଭୁଲ ଠିକ୍ ମଝିରେ ବାଟ ନାହିଁ । ଯାହା ଅଛି ସେଟା ଅବାଟ ମୁଁ ମାନୁଚି । କିନ୍ତୁ ସବୁଦିନ ସେଇ ଅବାଟରେ ଚାଲି ଚାଲି ଆମ ପାଇଁ ଗୋଟିଏ ବାଟ ଫିଟି ଗଲାଣି । ସେଇଟା ଆମ ପାଇଁ ବାଟ, ଅନ୍ୟ ମାନଙ୍କ ପାଇଁ ଅବାଟ ହୋଇପାରେ । |
| ନମିତା | ମୁଁ ତମ କଥା ମୋଟେ ବୁଝିପାରୁ ନାହିଁ । |
| ହର | ତମେ ଏ ସବୁ ବୁଝିବା ଦରକାର ନାହିଁ । ମତେ କ'ଣ ଦିଟା ଦେଲ ଭୋକ ହେଲାଣି । |
| ନମିତା | ହଉ ଚାଲ, ଖାଇବ ଚାଲ । (ଦୁହେଁ ଉଠିଗଲେ) |



ଆନଂଦ ଚଂଦ୍ର ପହି

## ଚତୁର୍ଥ ଦୃଶ୍ୟ

(ରବିବାର ସକାଳ । ହର ପ୍ରସନ୍ନ ରାଜଧାନୀ ହାଟ ସଉଦା କରି ଫେରିଛନ୍ତି । କବାଟ ଠକ୍ ଠକ୍, ଧଡଧଡ କରିଚନ୍ତି ।)

ନମିତା : କିଏ ? କିଏମ ? ରୁହ, ମୁଁ ଯାଉଚି ।

ହର : ଆରେ କବାଟ ଖୋଲ ।

ନମିତା (କାବଟ ଖୋଲିଲେ) ଏତେ ଯୋର୍‌ରେ କାଇଁକି କବାଟ ବାଡୋଉଥିଲ ?

ହର ସକାଳଟାରୁ କବାଟ କିଳି କ'ଣ କରୁଥିଲ ? ମୁଁ କବାଟ ବାଡେଇ ବାଡେଇ ଥକିଲିଣି କାହାରି କାନକୁ ଶୁଭୁ ନାହିଁ ?

ନମିତା ତମେତ ସବୁବେଳେ ବାହାରେ ବାହାରେ ରହିଲ, ଘରକଥା ଜାଣିବ କୁଆଡୁ ?

ହର କ'ଣ ହେଇଚି ?

ନମିତା ତମର ଏଇ ଚିନୁ ମିନୁ ତମ ଆଗରେ ସୁନା ପିଲା । ତମେ ଘରୁ ଟିକେ ଗୋଡ କାଢ଼ିଲେ ଯିଏ ଯୁଆଡେ ପାର । ମୁଁ ଯେତେ କହିଲେ ମୋ କଥା କିଏ ମାନୁଚି ? ମୁଁ ମାରି ମାରି ମୋ ହାତକୁ କାଟିଲାଣି ଟାକୁ କାଟୁ ନେଇଁ ।

ହର ହେଲାଯେ ସକାଳଟାରୁ କବାଟ କିଳିଚ କାଇଁକି ?

ନମିତା ମୁଁ ସେଗୁଡାକୁ କେତେ ଜଗିବି ? କିଏ କୁଆଡେ ଡିଆଁ ମାରିଦେବେ ସେଥିପାଇଁ କବାଟ କିଳି ଦେଇଥିଲି ।

(ଆର ଘରୁ ହଠାତ ମିନୁର ପଣିକିଆ ପଢ଼ିବା ଆରମ୍ଭ ହୋଇଗଲା । ମିନୁ ଆର ଘରୁ ଶୁଣେଇ ଶୁଣେଇ ପଢ଼ି- ପାଞ୍ଚ କେ ପାଞ୍ଚ, ପାଞ୍ଚ ଦୁନେ ଦଶ, ପାଞ୍ଚ ତିରି ପନ୍ଦର... ଚୋଉ କୋଡିଏ.... ଇତ୍ୟାଦି)

ହର ମିନୁ ! ଏ ମିନୁ !

ଆନଂଦ ଚଂଦ୍ର ପହି

| | |
|---|---|
| ମିନୁ | (ଆର ଘରୁ) ଆଜ୍ଞା । |
| ହର | ଏଠିକି ଆସିଲୁ ମାଆ । |
| ମିନୁ | (ମିନୁ ଆସି ପହଞ୍ଚିଲା । ତା ଗୋଡ ବାଜି ଗୋଟିଏ ଗିନା ଝଣଝାଣ ଶବ୍ଦ କରି ଚଟାଣ ଦେହରେ କିଛିବାଟ ଘୁସୁରି ଯାଇଚି ।) |
| ନମିତା | ଗଲା, ଗିନାଟା ଭାଙ୍ଗିଗଲା ନା ରହିଲା ? ଏମିତି ଉଦଣ୍ଡୀ ପରି ବାଟ ଚାଲୁଚୁ କ'ଣ ? ଦିଶୁ ନେଇଁ ? |
| ହର | ଦିଶିବ କେମିତି ? ମତେ ଦେଖିକି ଝିଅ ମୋର ଏଇନା ପାଠ ପଢୁଥିଲା । |
| ମିନୁ | ମୋ ଗୋଡ ବାଜିଲା, ମୁଁ କଣ କରିବି ଯେ ? କେତେବେଳୁ ମୁଁ ଖାଇ ସାରିଲିଣି ବୋଉ ଗିନାଟା ଉଠେଇ ନେଇଁ । ମୋର କ'ଣ ଦୋଷ ? |
| ନମିତା | ନାଇଁ ସବୁ ଦୋଷତ ବୋଉର । ତୁ ଖାଇ ସାରିଲୁ ଗିନାଟା ନେଇକି ପାଇପି ପାଖରେ ଥୋଇ ଦେଲୁ ନାହିଁ ? ଛଅ ବର୍ଷର ଝିଅଟେ ହେଲୁଣି ଖାଇବା ଗିନାଟେ ଉଠେଇ ପାରିବୁ ନେଇଁ ? ସବୁ ଖାଲି ବୋଉ କରିବ ? |
| ହର | ମିନୁ ! ତୁ ଅଛୁ ଚିନୁ କୁଆଡେ ଗଲା ? |
| ମିନୁ | ସିଏ ତାର ଖେଳିବାକୁ ପଳେଇଲା ? |
| ହର | ସକାଳଟାରୁ ଖେଳ ଆରମ୍ଭ ହେଇଗଲାଣି ? |
| ନମିତା | ମୁଁ କବାଟ କିଳିକି ବି ତାକୁ ଅଟକେଇ ପାରିଲି ନେଇଁ, କେତେବେଳେ ଖସି ପଳେଇଚି । |
| ମିନୁ | କବାଟ କିଳିକି ମତେ ଖାଲି ଘରେ ପୂରେଇଚୁ । ଆଜି ରଇବାର, ସମସ୍ତେ ଖେଳୁଚନ୍ତି । ମୁଁ କାଇଁକି ପଢ଼ିବି ? |
| ହର | ରବିବାର ବୋଲି କ'ଣ ସକାଳୁ ରାତି ଅଧଯାଏ ଖେଳିବ ? |
| ନମିତା | ଏତେ ବକଟେ ଛୁଆ, ତମେ କଣ ତାକୁ କଥାରେ ପାରିବ ? ପରିବା ବ୍ୟାଗ୍‌ଟା କୋଉଠି ରଖିଲ ? |
| ହର | ବାହାରେ ସାଇକେଲ୍‌ରେ ଅଛି । |
| ନମିତା | ମୁଁ ନେଇ ଆସୁଚି ତମେ ପ୍ୟାଣ୍ଟ ସାର୍ଟ ବଦଳ । |
| ମିନୁ | ବୋଉ ! ମୁଁ ଆଣିବି । |
| ନମିତା : | ନାଇଁ ତୁ ଟେକି ପାରିବୁ ନେଇଁ । ତୁ ଯା ପଢ଼ିବୁ । |

**ଆନଂଦ ଚଂଦ୍ର ପତି**

(ନମିତା ପରିବା ବ୍ୟାଗଟା ଆଣିବାକୁ ବାହାରକୁ ଗଲେ । ହରପ୍ରସନ୍ନ ଘରେ ବସିଲେ । ନମିତା ପରିବା ବ୍ୟାଗଟା ଧରି ରୋଷେଇ ଘରକୁ ଗଲେ ।)

ହର ମିନୁ ! ସେ ଘରୁ ମୋ ଟାଉଏଲ୍‌ଟା ଆଣିଲୁ ମାଆ ।

ମିନୁ କୋଉ ଟାଉଏଲ୍‌ଟା ?

ହର ଗାର୍ ଗାର୍‌କା ଟାଉଏଲ୍‌ଟା ।

ମିନୁ (ମିନୁ ଆରଘରକୁ ଗଲା)

(ହର ସାର୍ଟ ବଦଳାଉଥିଲେ । ମିନୁ ଆଣି ଟାଉଏଲ୍ ଦେଲା ।)

ହର ନେ ମାଆ, ସାର୍ଟଟା ନେଇକି ହାଙ୍ଗରେ ଟାଙ୍ଗି ଦେ ।

(ସାର୍ଟଟା ବାପାଙ୍କ ହାତରୁ ନେଲା ବେଳେ ପଚାଶ ପଇସିଟାଏ ଠଣ୍ କରି ତଳେ ପଡିଗଲା । ମିନୁ ସେ ପଚାଶ ପାଇସିଟାକୁ ଖୁବ୍ ଆଗ୍ରହରେ ତଳୁ ଉଠାଇଲା । ହରପ୍ରସନ୍ନ ପଇସା ମିଶାକି ମିନୁ ହାତକୁ ଧରି ନେଲେ ।)

ହର ଛାଡ, ଛାଡ କହୁଚି । ପଚାଶ ପଇସିଟା ନେଇ ତୁ କ'ଣ କରିବୁ ?

ମିନୁ କାହିଁକି ? ମୁଁ ମୋର ପାଇଲି, ମୋର ଯାହା କରିବି । ତମର କ'ଣ ଗଲା ?

ହର ମିନୁ ମୋର ସୁନାଝିଅ, ମତେ ଦବଯେ । ଦେବୁ ନଇଁ ?

ମିନୁ ନାଇଁ ମୁଁ ଦେବି ନେଇଁ । ମୁଁ ପାଇଲି ତମକୁ କାହିଁକି ଦେବି ?

ହର ମତେ ଦେଲେ ମୁଁ ତତେ ଲଜେନ୍ସ ଦେବି ।

ନମିତା (ରୋଷେଇ ଘରୁ) କାହିଁକି ? ତାକୁ କ'ଣ ଲଜେନ୍ସ କିଣି ଆସିନେଇଁ ନା ଲଜେନ୍ସ ଦୋକାନ ସିଏ ଦେଖି ନେଇଁ ? ଆଲୋ ଏ ମିନୁ ! କେତେ ପଇସା କିଲୋ ? (ଏ ଘରକୁ ଚାଲି ଆସିଲେ)

ମିନୁ କଇବି, ମୁଁ ମୋର ପଚାଶ ପଇଶିଟେଇ ପାଇଲି ।

ନମିତା ପଚାଶଟା ବୋଲି ପଇସା । ପିଲା କେତେ କ'ଣ ନେଇକି ଖର୍ଚ୍ଚ କରୁଚନ୍ତି । ବାପା ହେଇ ଝିଅ ହାତରୁ ତମେ ଆହୁରି ଛଡଉଚ ।

ହର ମିନୁ ! ଛାଡୁଚୁନା ଦେଖିବୁ ଏଇଲେ ? (ହାତକୁ ଯୋର୍‌ରେ

ଚାପିଦେଲେ)

ମିନୁ ବୋଉ ମରିଗଲି, ମରିଗଲି । ଇଲୋ ମୋ ହାତ । ଆଃ ମରିଗଲି ।

ହର ଛାଡ, ଛାଡ ।

ନମିତା ପଚାଶଟା ପଇସା ପେଇଁ ଛୁଆଟାକୁ ମାରିଦବନା କ'ଣ ? ତାର କଅଁଳ ହାତଟା ଭାଙ୍ଗିଯିବ, ଛାଡି ଦିଅ ।

ମନୁ ବୋଉଲୋ ମରିଗଲି ।

ହର କାଇଁକି ମିଛଟାରେ ପାଟି କରୁଚୁ ?

ନମିତା ଟା ହାତଟା ନାଲି ପଡିଗଲାଣି । ଛାଡିଲ ତମେ ମୋ ଝିଅ ହାତକୁ ।

(ହର ପ୍ରସନ୍ନଙ୍କ ହାତକୁ ମିନୁ ହାତରୁ ଛଡାଇବାକୁ ଚେଷ୍ଟା କଲେ)

ହର ତମେ କ'ଣ ମୋ ସାଙ୍ଗରେ ମାଡ ଗୋଳ କରିବ ନା କ'ଣ ?

ନମିତା ତମେ ଟା ହାତଟା ଛାଡିଲ ।

ହର ରୁହମ, ଏମିତି ଛଡାମଡା କରୁଚ କ'ଣ ?

ନମିତା ଛୁଆ ହାତଟା କୁଆଡୁ କ'ଣ ଅସଜ ହେଇଯିବ, ତମେ ଟା ହାତଟା ଛାଡିଲ ଆଗ ।

ହର ଛାଡି ଦଉଚି, ଏମିତି ଭିଡାଓଟରା କାଇଁକି କରୁଚ ? ରୁହ । (ହର ପ୍ରସନ୍ନ ମିନୁର ହାତ ଛାଡି ଦେଲେ । ମିନୁ ଖଣ୍ଡେ ଦୂର ଚାଲିଯାଇ ଠିଆ ହେଲା ।)

ମିନୁ (ହସି ହସି) ହେଇରେ ବାପା ପାରିଲେ ନେଇଁ ।

ନମିତା ତୁ ଯାଉଚୁନା ?

ମିନୁ ବୋଉ ଟାଆ ଟାଆ । ବାପା ଟାଆ ଟାଆ ।
(ଡେଇଁ ଡେଇଁ ବାହାରକୁ ପଳେଇଲା)

ହର ଏ ଟାଆ ଟାଆ କୋଉଠୁ ଶିଖିଲା ?

ନମିତା ଖାଲି କ'ଣ ସେତିକି ? ଟିକେ କଥାରେ କହୁଚି- ଭାରି ସିନିଅର ଦେଖେଇ ହଉଚୁ । ତୋର କ୍ୟା ଗଲା ?

ହର ଆଜି କାଲିକା ପିଲା କେତେ କଥା ଶିଖିଲେଣି ।

ନମିତା ତମେ ହାତ ଧୋଇହେଇ ଆସ, ଖେଚେଡି ହେଇଚି ଟିକେ

ଖାଇ ଦିଅ ।

ହର ଖେଚେଡି ? ହଉ ଆଣ ।

ନମିତା ନିଅ ପାଣି ଢ଼ାଳ ନିଅ । ହାତ ଧୋଇ ହୁଅ, ମୁଁ ଖେଚେଡି ବାଢ଼ିକି ଆଣୁଚି ।

(ପାଣି ଢ଼ାଳ ବଢ଼େଇ ଦେଇ ନମିତା ରୋଷେଇ ଘରକୁ ଗଲେ ଖେଚେଡି ଆଣିବାକୁ ଆଉ ହର ପ୍ରସନ୍ନ ମୁହଁ ଧୋଇହୋଇ ଆସି ବସିଲେ । ନମିତା ଆଣି ଖେଚେଡି ଥୋଇଲେ)

ହର : (ଖାଇବସି) ଖେଚେଡି ପାଇଁ ଅରୁଆ ଚାଉଳ କୋଉଠୁ ଆଣିଲ ?

ନମିତା ତମେ ତ ଚକୁଳି ଖାଇବା ଲୋକ ବିନ୍ଧ ଗଣିବାକୁ ତୁମକୁ କିଏ କହିଲା ?

ହର ମୋର ଭୁଲ ହେଇଗଲା । ମୋ କଥା ମତେ ଫେରାଇ ଦିଅ ।

ନମିତା ମୋରତ ଆଉ କିଛି କାମ ନାହିଁ, ତମକୁ ଖାଲି କଥା ଦଉଥିବି ଆଉ ଫେରାଉଥିବି । ଆଉ ଦେବି ନା ଏତିକି ହେଇଯିବ ? କୁହ ଏକାଥରେକେ ଦେଇ ଦେଇ ମୁଁ ପରିବା କାଟିବି ।

ହର (ଖାଉ ଖାଉ) ଇଏତ ବଳିବ, ଆଉ କ'ଣ ହବ ?

(ହର ପ୍ରସନ୍ନ ଖେଚେଡି ଖାଇଲେ)

ନମିତା ମୁଁ ତାହେଲେ ପରିବା କାଟୁଚି ?

ହର ପରିବା ତ କାଟିବ ମତେ ଧମକାଇବାର କ'ଣ ଅଛି ?

(ନମିତା କିଛି ନକହି ପନିକି ଆଣି ସେଇଠୁ ଅଳ୍ପଦୂରେ ବସି ପରିବା କାଟିଲେ ।)

ନମିତା ଆଳୁ ବାଇଗଣ ଛଡା କ୍ୟାପିଟାଲ ହାଟରେ କ'ଣ ଆଉ କିଛି ପରିବା ମିଳୁନେଇ ? ମୁଁ କେମିତି କ'ଣ ତର୍କାରି କରିବି ଯେ ?

ହର (ଖାଉ ଖାଉ) କାଇଁକି ? କ'ଣ ଅସୁବିଧା ହେଲା ?

ନମିତା ଯାହା ପାରି ତା ଥୋଇ ଦେଲେ ଗଲା, ତର୍କାରି ହଉ ତ ନହେଉ । ଇହି... ହି । ଏ ଆଳୁ ବାଇଗଣ ଟିକେ ଦେଖିକି ଆଣିଲେ ହୁଅନ୍ତା ନେଇଁ ? ପଇସା ଦେଇ ଆଣିଚ ନା ମାହାଳିଆ ଆଣିଚମ ?

ହର ପଇସା ଦେବି କାଇଁକି ? ଦୋକାନୀ ମତେ ପରିବା ଦେଲା,

ଆଉ ଘର ଖର୍ଚ୍ଚ କରିବା ପାଇଁ କିଛି ଟଙ୍କାବି ଦେଲା ।

ନମିତା ମାହାଳିଆ ନହେଲେ କ'ଣ ହେଲା ? ମାହାଳିଆର ବଡବାପା ଆଣିଚ । ଶସ୍ତା ଦେଖିକି ଆଣିଚ । ତମର କ'ଣ ଯାଉଚି ? ହଇରାଣ ହେବା ଲୋକତ ମୁଁ ।

ହର ତମେ ହାଟକୁ ଯାଆନ୍ତ କି ବୁଝନ୍ତ । ଘରେ ବସି ଢିରାରୁ ଶିରା ବାଛିବା ତମର ଅଭ୍ୟାସ ହେଇ ଗଲାଣି । ପର ମୁଣ୍ଡରେ ପାଣି ବୁହାଇବା ନିଜକୁ ଖୁସି ଲାଗିପାରେ କିନ୍ତୁ ବୋଝ ବୋହିବାଟା କେତେ କଷ୍ଟ ସେ କଥା ବୋଝ ବହୁଥିବା ଲୋକର ମୁଣ୍ଡ ଜାଣେ ।

ନମିତା ହ ମ, ତମକୁ ଖାଲି ସବୁକଥା କାଟୁଚି । ଆଉ କିଏ କ'ଣ ଘର ଚଳଉଚନ୍ତି ନା ହାଟ ସଉଦା ଆଣୁଚନ୍ତି ? ତମେ ତ ଯାହା ଘରେ ନାହିଁ, ତା ଘର ଏକଦମ୍ ଅଚଳ ।

ହର ସରକାରୀ ଚାକିରିଟା ମୁଁ କୌଣସି ମତେ ଚଳେଇ ନଉଚି । କିନ୍ତୁ ତମ ପାଖରେ ଏ ଘରୋଇ ଚାକିରି ଖଣ୍ଡକ ଚଳେଇବା ଭାରି କଷ୍ଟ ଦେଖୁଛି ।

ନମିତା ପର ମଣିଷ ପରି ଉପର ଠାଉରିଆ କାମ ଗୁଡାକ କରୁଚ । ଏଥିରେ କିଏ ନକହିବ ଯେ ?

ହର ଯେତେ ଯେମିତି କଲେତ ମୋ କାମ ତମ ମନକୁ ଯାଉନେଇଁ । ଏଣିକି ତମେ ହାଟ ବଜାର କର । ଟଙ୍କା ରଖ, ଘର ଚଳା ।

ନମିତା (ହାତ ବଢ଼ାଇଲେ) କେତେ ଟଙ୍କା ରଖିଚ ଦେଲ ।

ହର ନିଅ ଧର ।

ନମିତା କେତେ ଟଙ୍କା ?

ହର ପଚାଶ ଟଙ୍କା ।

ନମିତା (ପାଇସା ନେଇ) ମଲା, ପଚାଶ ପଇସାକୁ କହୁଚ ପଚାଶ ଟଙ୍କା ? ପଚାଶ ପଇସାଟା ତମକୁ ପଚାଶ ଟଙ୍କା ପରି ଲାଗୁଚି ?

ହର ଲାଗିବ ନେଇଁ ? ମାସର ଆଜି କେତେ ତାରିଖ ହେଲା ? ୨୫ ତାରିଖ । ବୁଝିଲ ?

ନମିତା ସେଇଥି ପାଇଁ ପଚାଶ ପଇସିଟାଏ ପାଇଁ ନିଜ ଝିଅ ସାଙ୍ଗରେ ଲଢ଼େଇ କରୁଥିଲ ?

ଆନଂଦ ଚଂଦ୍ର ପହି

ହର ପଇସା ନେଇ ସିଏ କ'ଣ କରିବ ?
ନମିତା ପଚାଶଟା ପଇସାରେ ତମେ କ'ଣ କରିବ ? ଦରମା ପଇସା ପହିଲାକୁ ପହିଲା ଗାଆଁକୁ ପଠେଇ ଦଉଚ । ଏଠି ଦୁନିଆ, ଧାର, ଉଧାର, ଶୁଝିବା ପାଇଁ ତମ ପାଖରେ ପଇସା ନାହିଁ ।
ହର : ତମେ ଏଠି ଚଳୁଚ କେମିତି ?
ନମିତା : ମାସର ପନ୍ଦର ତାରିଖରୁ ତମର ଧାର, ଉଧାର, କରଜ ଆରମ୍ଭ । ତମେ ପଚରା, ପୋକରା ପରିବା ଆଣିବ ନାହିଁତ ଆଉ କ'ଣ ମାଛ ମାଂସ ଆଣିବ ?
ହରି ଭାରି ମାଛ ମାଂସ ଖାଉଚ । ଏମିତି ଖାଇଲେ ଅଭ୍ୟାସ ହେଇଯିବ । ପହିଲା ଦିନ ପରା ମାଛ ଆଣିଥିଲି ?
ନମିତା ପହିଲା ଦିନ ମାଛ ଖାଇଥିଲୁ ବୋଲି କ'ଣ ମାସ ସାରା ଆର ପହିଲାକୁ ଅନେଇଁ ଅନେଇଁ ଦିନ କଟେଇବୁ ? ଯୋଉମାନେ ମାସର ପ୍ରତି ରବିବାର ମାଛ କି ମାଂସ ଖାଉଚନ୍ତି ସେମାନେ କ'ଣ ମାସକୁ ଚାରି ଚାରିଥର ଦରମା ପାଉଚନ୍ତି ?
ହର ଯାଉନା ଯାହାଘରେ ମାସକୁ ଚାରି ଚାରି ଥର ମାଛ, ମାଂସ ଆସୁଛି ତା ଘରେ ରହିବ ?
ନମିତା ତମେ କାହିଁକି ଦରମା ପାଇକି ଗାଆଁକୁ ଟଙ୍କା ପଠେଇଦବ ଆମେ ଏଠି ହୀନସ୍ତା ହେଇ ଚଳିବୁ ?
ହର ଆଉ କଣ ତମେ କହୁଚ ମୁଁ ଗାଆଁକୁ କିଛି ନଦେଇ ଖାଲି ଏଠି ତୁମକୁ ଆଉ ତୁମ୍ଭଛୁଆଙ୍କୁ ବସି ଚଳାନ୍ତି, ଚେସ୍‌ଖେଳର ହାତୀ, ଘୋଡା ଚଳେଇବା ପରି ?
ନମିତା କ'ଣ କହିଲ ? ଆମକୁ ତମେ ହାତୀଘୋଡା ପରି ଚଳଉଛ ? ଚଳେଇବା ମୁହଁ ତମର ଦିଶୁଚି ? ଖାଲି ଏଡେ ପାଟିଟେ କରି ସବୁ କଥାରେ ଡରେଇ ଦଉଚ । ତମେ ଏକା ଚାକିରି କରିଚନା ଆଉ କିଏ ଚାକିରି କରିଚି ? ଜେନାବାବୁ, ପରୀକ୍ଷିତବାବୁ, ପ୍ରଧାନବାବୁ, ପୃଷ୍ଟିବାବୁ, ମିଶ୍ରବାବୁ ସମସ୍ତେ ତମରି ଅଫିସ୍‌ରେ ଚାକିରି କରିଚନ୍ତି ।
ହର କ'ଣ ହେଲା ସେଠୁ ?
ନମିତା ତାଙ୍କ ଘରକୁ ଗଲ ଦେଖିବ ତାଙ୍କ ପିଲାଏ କେମିତି ଚଳୁଚନ୍ତି,

କ'ଣ ପିନ୍ଧୁଚନ୍ତି, କ'ଣ ଖାଉଚନ୍ତି ? ତାଙ୍କ ସ୍ତ୍ରୀଙ୍କ ଶାଢ଼ି ଗହଣା ଦେଖିଚ ? ସେଇ ଦରମା ସେମାନେ ପାଉଚନ୍ତି, ତମେ ବି ପାଉଚ ।

ହର ଏକା ପୋଷାକ ପିନ୍ଧି ଏକା ଶ୍ରେଣୀରେ ବସିଥିବା ସବୁ ଛାତ୍ରଙ୍କ ଘରର ଅବସ୍ଥା କ'ଣ ଏକା ? ଆମେ ସିନା ଏକା ଅଫିସ୍‌ରେ ଚାକିରି କରୁଚୁ, ସମାନ ଦରମା ପାଉଚୁ ହେଲେ ସେମାନେ ସବୁ ମୋ ପରି ଗରିବ ଘରର ପୁଅ ନୁହଁନ୍ତି । ସେମାନେ ତାଙ୍କ ଘରୁ ବର୍ଷଯାକର ଚାଉଳ, ଡାଲି ପାଆନ୍ତି । ସେମାନେ ଗାଆଁକୁ କିଛି ନଦେଲେ ବି ତାଙ୍କ ଘର ଚଳିବ । ସେମାନଙ୍କ ସାଙ୍ଗରେ ମୁଁ କେମିତି ସମାନ ହେବି ?

ନମିତା ଆଉ କାହା କଥା ସିନା ମୁଁ କହି ପାରିବି ନେଇଁ ହେଲେ ତମ ବନ୍ଧୁ ପ୍ରଧାନବାବୁ ? ଗାଆଁରେ ତାଙ୍କ ଘର ଅବସ୍ଥା ତମ ଘରଠୁ ବଳି । ସିଏତ ପୁଣି....

ହର ସିଏ କଣ କରୁଚି ?

ନମିତା ସିଏ ଏଠି ନବାବ ସାଇବଙ୍କ ପୁଅ ପରି ଚଳୁଚନ୍ତି । ତାଙ୍କର ଏଠି ନାହିଁ କ'ଣ ? ସ୍କୁଟର, ଫ୍ରିଜ୍, ରଙ୍ଗୀନ ଟିଭି, ଗଡରେଜ ଆଲମିରା, ଗ୍ୟାସଚୁଲା ଆଉ ତାଙ୍କ ସ୍ତ୍ରୀଙ୍କର ଦାମି ଦାମି ଶାଢ଼ି, ସୁନା ଗହଣା । ଏବେ ତାଙ୍କର ଘର ତିଆରି କରୁଚନ୍ତି ।

ହର ତମେ କ'ଣ କହୁଚ ମୁଁ ସେମିତି କରିବି ? ଗାଆଁ, ମାଆ, ଭାଇ, ଭାଉଜ ସମସ୍ତଙ୍କୁ ପିଠିକରି ତୁମ ଆଡକୁ ଆଉ ତୁମ ପିଲାଙ୍କ ଆଡକୁ ମୁହଁ କରି ଠିଆ ହେବି ?

ନମିତା ମୁଁ ଏତେ କଥା ଜାଣି ନେଇଁ କିନ୍ତୁ ସମସ୍ତଙ୍କ ମେଳରେ ଏମିତି ଅଭେକା ହେଇ ଚଳିବାକୁ ମୋତେ ଲାଜ ଲାଗୁଛି । ଟିନୁ, ମିନୁ ଯୋଉଠୁ ଯାହା ଦେଖି ଆସୁଚନ୍ତି ସେ ଜିନିଷ ପାଇଁ ଝଟାପଟା ଲଗେଇ ଦଉଚନ୍ତି । ଥିଲା ନଥିଲା ସେମାନେ ଜମା ବୁଝୁନାହାଁନ୍ତି ।

ହର ତମେ ଖୁବ ବଦଳି ଗଲଣି ନମି ।

ନମିତା : ବଦଳିଲି କ'ଣ ?

ହର (ନମିତାଙ୍କ ପାଖକୁ ଚାଲିଯାଇ ତାଙ୍କ ମୁହଁକୁ ନିକଟରୁ

ଦେଖିଲେ) ତମ ଆଖି ଭିତରେ ମୁଁ ଦେଖୁଛି ଆଉ ଗୋଟିଏ ନମିତାର ଛବି । ସେ ନମିତାର ବୟସ ଏ ନମିତା ଠାରୁ ବାର ବର୍ଷ କମ୍ । ସେ ନମିତା ଏ ନମିତା ଠାରୁ କେତେ ଅଲଗା ସତେ ! ସେଦିନର କଥା ତମର ମନେ ଅଛି ? ସେତେବେଳେ ତୁମେ ଭୁବନେଶ୍ୱର ଆସି ନଥିଲ, ଆମ ଗାଆଁରେ ଥିଲ ।

(ଫ୍ଲାସ୍ ବ୍ୟାକ୍)

(ହର ପ୍ରସନ୍ନଙ୍କ ବଡ ଭାଇ ବିଲ ବାଛୁ ବାଛୁ ଓଦାଲୁଗାରେ ଘରକୁ ଫେରିଛନ୍ତି ।)

ଦେବ ବୋଉ ! ଏ ବୋଉ ! ଏ ବୋଉ !

ସାବିତ୍ରୀ (ଘର ଭିତରୁ) କ'ଣ କିରେ ଦେବ !
(ପାଖକୁ ଆସି) ଦେହ ହାତ ଏମିତି ପାଣି କାଦୁଅ ସାଲୁବାଲୁ । ଗଲା ଘରଟା ଓଦା ହେଇଗଲା । ଯା, ପଦାକୁ ଯା ।

ଦେବ ବିଲ ବାଛୁଥିଲି ଚାଲି ଆସିଲି ।

ସାବିତ୍ରୀ ଏମିତି ଓଦା ଲୁଗା ପିନ୍ଧି ଠିଆ ହେଲେ ଥଣ୍ଡା ଧରିବ । ଯା ଧୋଇ ଧାଇ ହେଇ ଶୁଖିଲା ଲୁଗାଟେ ବଦଳି ପକା ।

ଦେବ ତୋର ଯୋଉ କଥା ବୋଉ, ମୁଁ କ'ଣ ପିଲା ହେଇଚି ଯେ ଓଦା ହେଲେ ଥଣ୍ଡା ଧରିବ ?

ସାବିତ୍ରୀ ଥଣ୍ଡା ପାଇଁ ପିଲା କ'ଣ ବୁଢ଼ା କ'ଣ ?

ଦେବ ମୁଁ ସବୁଦିନ ସକାଳୁ ସଂଜଯାଏ ବିଲରେ ଆଣ୍ଠେଇ ବିଲ ବାଛୁଚି ଥଣ୍ଡା ଧରୁ ନେଇଁ ଆଉ ଓଦା ଲୁଗା ପିନ୍ଧି ଅଧ ଘଣ୍ଟେ ଠିଆ ହେଇ ପଡିଲେ ଥଣ୍ଡା ଧରିବ ?

ସାବିତ୍ରୀ ତୋ ମନ ଯାହା ହଉଚି କର ।

ଦେବ ହଉ ଦେ, ଶୁଖିଲା ଲୁଗାଟେ ଦେ ମୁଁ ବଦଳି ପକାଏ ।

ସାବିତ୍ରୀ (ଆଲେଣାରୁ ଲୁଗାଟେ ଦେଲେ । ଦେବ ଲୁଗା ବଦଳିଲା)
କାଦୁଅ ସର ସର ହେଇ ବିଲରୁ ଉଠି ଆସିଲୁ କାଇଁକି ?

ଦେବ ମଦନକୁ କଇଁଥିଲି ବିଲକୁ ଭାତ ନେଇକି ଯିବାକୁ । କାଇଁ ସିଏ କୁଆଡେ ଗଲା ? ଅନେଇଁ ଅନେଇଁ ମୁଣ୍ଡ ଉପରୁ ଦିନ ଗଡିଲା ତାର ଦେଖା ଦର୍ଶନ ନାହିଁ ।

ସାବିତ୍ରୀ ଆରେ ମଦନ ତୋ କତିକି ଯାଇ ନେଇଁ ?

| | |
|---|---|
| ଦେବ | କାହିଁ ? |
| ସାବିତ୍ରୀ | ସିଏ ତୋ ପେଇଁ ଭାତ ନେଇକି ଅଧ ଘଣ୍ଟାଏ ହେଲା ଗଲାଣି । ଆଉ କୁଆଡେ ଗଲା ? |
| ଦେବ | ସିଏ ଆଜି ଆସୁ ତା ଫାଜିଲାମି ଛଡେଇ ଦଉଚି । |
| ସାବିତ୍ରୀ | ମୁଁ ତାକୁ କଇଲି ଝଅଟ ଯିବୁ ବାଟରେ କୋଉଠି ଖେଳିବୁ ନେଇଁ କି ଗପ କରିବୁ ନଇଁ । ଆସୁ ସେ ବଗୁଲିଆ ଟୋକା ! ଆଲୋଏ ପ୍ରଧାନ ଝିଅ । ପଖାଳ ବେଲାଏ ଆଣିବୁଟି, ଝଅଟ ଆଣ । ଭୋକରେ ମୋ ପୁଅର ହଂସା ବୁଡିଲାଣି । |
| ଦେବ | ତୁ ଗଲୁ ଜଲଦି ନେଇ ଆସିବୁ । |
| ସାବିତ୍ରୀ | ତୁ ଏଇ ପିଢ଼ାରେ ବଅ ମୁଁ ଆଣୁଚି । (ପ୍ରସ୍ଥାନ) |
| ଦେବ | (ପିଢ଼ାରେ ବସି । ଗାମୁଛାରେ ମୁହଁ ହାତ ପୋଛିଲା ।) ବୋଉ ! ଏ ବୋଉ ! ଆଣିଲୁ ! |
| ସାବିତ୍ରୀ | ନୋଉଚି । (ଭାତ ଧରି ପ୍ରବେଶ କଲେ । ଦେବ ଆଗରେ ଥୋଇଲେ) |
| ଦେବ | ଲୁଣ ପକେଇଚୁ ? |
| ସାବିତ୍ରୀ | ହଁ, ଲୁଣ ପଡିଚି । ଗୋଳେଇ ଦେ । |
| ଦେବ | ବୋଉ ! ଇଏ କ'ଣ ଆମ ବାରିଲଙ୍କା ? |
| ସାବିତ୍ରୀ | ପାଣି ମାଠିଆ ପାଖରେ ଯୋଉ ଧାନୁଆଁ ଲଙ୍କା ଗଛ ଅଛି ସେଇ ଗଛର । |
| ଦେବ | (ଲଙ୍କା ଖାଇ) ଆଃ, ଭାରି ରାଗ ହେଇଚି । |
| ସାବିତ୍ରୀ | ଏକା ବେଳକେ ଦିଇଟା ଲଙ୍କା ଦକି ଦେଇଚୁ, ରାଗ ହବ ନେଇଁ ? |
| ଦେବ | ରାଗ ନହେଲେ କ'ଣ କିଛି ବାଗ ଲାଗିବ ? |
| ସାବିତ୍ରୀ | ଏତେ ରାଗ ଖାଇଲେ କଲିଜା ଜଳିଯିବ । |
| ଦେବ | ଏତେ ଟିକେ ଟିକେ ଲଙ୍କା ଏତେ ରାଗ ହବ ବୋଲି ମୁଁ କ'ଣ ଜାଣିଚି ? |
| ସାବିତ୍ରୀ | ଝୋଳରେ ତୋରାଣି ଟିକେ ଢାଳିଦେ ରାଗ କମିଯିବ । ହଁ, ସେତିକି, ସେତିକି ଆଉ ପକାନା । ଆରେ ଦେବ ତୋ ହାତ ଦିଇଟା କ'ଣ ଏମିତି ଦୁଉଚି ? |

| | |
|---|---|
| ଦେବ | ସବୁଦିନ ପାଣି କାଦୁଅରେ ବିଲ ବାଛି ବାଛି ମୋ ହାତ ଗୋଡ ପାଣି ଖାଇ ଯାଇଚି । |
| ସାବିତ୍ରୀ | ଏଡେ ହାତେ ଘାଆ ହେଇଗଲାଣି ? |
| ଦେବ | ଗୋଡ ଦିଇଟା କୁଣ୍ଡେଇ ହୋଉଚି ଯେତିକି ପୋଡୁଚି ସେତିକି । |
| ସାବିତ୍ରୀ | କେତେ ଦିନ ଏମିତି ଏକୁଟିଆ ବିଲ ବାଛିବୁ ? |
| ଦେବ | ଆଉ କ'ଣ କରିବି ? ଏବର୍ଷ ମୁଲିଆ ମଜୁରି ୩୦ ଟଙ୍କା । ମଜୁରି ଦେଇ ବିଲ ବଛେଇବାକୁ ଏତେ ଟଙ୍କା କୋଉଠୁ ଆଣିବି ? |
| ସାବିତ୍ରୀ | କେତେ ଜଣ ମଣିଷ ଲାଗିବ ? |
| ଦେବ | ଷାଠିଏ, ସତୁରୀ ମଣିଷରୁ କମ୍ ଲାଗିବେ ନେଇଁ । |
| ସାବିତ୍ରୀ | କେତେ ଟଙ୍କା ଲାଗିବ ? |
| ଦେବ | ଦି ହଜାର ଟଙ୍କା ଲାଗିବ । |
| ସାବିତ୍ରୀ | ଦି ହଜାର ? |
| ଦେବ | ଏତେ ଟଙ୍କା ମୁଁ କୋଉଠୁ ଆଣିବି ? |
| ସାବିତ୍ରୀ | କିରେ, କିରେ, ଆଉ ଖାଇଲୁ ନଉଁ ? |
| ଦେବ | ନାଇଁ, ଆଉ ଖାଇବି ନେଇଁ । ସେଇଥି ପାଇଁ ଏକୁଟିଆ ବିଲ ବାଛୁଚି । ତିରସ୍ତାସନ ପଦନ ସାମଲଠୁ ପାଞ୍ଚ ପୋଉଟି ଧାନ କରଜ ଆଣିଥିଲି, ସୁଧ ଗଣ୍ଡାବକି ଗଲାସନ ଦେଇ ହେଲା ନେଇଁ । |
| ସାବିତ୍ରୀ | ତୋ ଦାଦା ଘରକୁ ମାଗିଲେ ଟଙ୍କା ପାଆଁଶ ସାତଶ ଦିଅନ୍ତେ ନେଇଁ ? |
| ଦେବ | ଏସନ ରଜକୁ ଦାଦାଘରୁ ଦି'ଶ ଟଙ୍କା ଆଣିଥିଲି, ସେ ଟଙ୍କା ଏଯାଏ ଶୁଝିନେଇଁ, ଆଉ ପୁଣି କୋଉ ମୁହଁରେ ଯିବି ? |
| ସାବିତ୍ରୀ | ହର କତିକି ଚିଠି ଦେ, ସିଏ କୋଉଠୁ ହେଲେ ବାହାର କରି ଟଙ୍କା ଦବ । |
| ଦେବ | ହର ପହିଲାକୁ ଦରମା ପାଇକି ଦେଇଥିଲା, ସିଏ ଆଉ କୋଉଠୁ ଆଣିବ ? ଇଏତ ଆମ ଗାଆଁ ଭୁଇଁ ହେଇ ଆମେ କୋଉଠୁ ଟଙ୍କା ଦିଇଶ ବାହାର କରି ପାରୁନା, ସିଏ ବିଦେଶ ଜାଗାରେ କାହାକୁ ମାଗିବ ? ସିଏତ ଜମା ଅଳ୍ପ ଦିନ ହେଲା ଚାକିରି |

କରିଚି ତାକୁ ସେଠି କିଏ ଚିହ୍ନିଚି ଯେ ଧାର କରଜ ଦବ ?
ସାବିତ୍ରୀ ଆଉ ଭାତ ଦେବି ?
ଦେବ ନାଇଁ ଆଉ ଖାଇବି ନେଇଁ ।
ସାବିତ୍ରୀ : ଯାଆ ଧୋଇ ହେଇପଡ ।
(ଦେବ ପ୍ରସନ୍ନ ଖାଇ ସାରି ଧୋଇ ହେବାକୁ ପାଣିଢ଼ାଳ ଧରି ବାହାରକୁ ଉଠିଗଲେ ।)
ନମିତା (ରୋଷେଇ ଘରୁ ଆସିଲେ) ବୋଉ !
ସାବିତ୍ରୀ (ତାଙ୍କ ପାଖକୁ ଯାଇ) କ'ଣ କିଲୋ ପଧାନ ଝିଅ ?
ନମିତା ବୋଉ ତମ ହାତ ଦେଖା । (ସାବିତ୍ରୀଙ୍କ ହାତକୁ ଟାଣି)
ସାବିତ୍ରୀ କାଇଁକି କ'ଣ ହେଇଚି ?
ନମିତା ତମେ ହାତ ଦେଖଉନା ।
ସାବିତ୍ରୀ କ'ଣ ଦଉଚୁ ଦେ ।
(ନମିତା ସାବିତ୍ରୀଙ୍କ ହାତରେ କାନର ବୁଲ୍ ହଳକ ଓହ୍ଲେଇ ଥୋଇଦେଲା ।)
ସାବିତ୍ରୀ ତୋ କାନର ଦୁଲ୍ ହଳକ ମୋ ହାତରେ ଦଉଚୁ କାଇଁକି ? କ'ଣ ଭାଙ୍ଗି ଯାଇଚି ? ଏ ଗାଆଁ ବଣିଆ ଭଲ ଗଢ଼ି ଜାଣିବ ନେଇଁ । ହର ଆସିଲେ ତାକୁ ଦେବି ସିଏ ଭୁବନିଶରରୁ ଗଢ଼େଇ ଆଣିବ । ନେ, ରଖିଥା ।
ନମିତା ନାଇଁମ ବୋଉ ! ଭାଙ୍ଗି ନେଇ ଭଲ ଅଛି ।
ସାବିତ୍ରୀ ଆଉ ତା ହେଲେ କାଇଁକି ଦଉଚୁ ?
ନମିତା ବିକିବାକୁ ।
ସାବିତ୍ରୀ ଗହଣା ବିକିବୁ ? କିଲୋ କାଇଁକି ?
ନମିତା ବିଲ ବଛା ପାଇଁ ପଇସା ନାହିଁ । ନନାକୁ ଦିଅ ଏଇ ଦୁଲ୍ ହଳକ ବିକିକି ବିଲ ବଛେଇବେ ।
ସାବିତ୍ରୀ ନାଇଁଲୋ ଝିଅ ! ତୋ ପାଇଁତ ଆମେ ନିମକାଠି ଖଣ୍ଡେ ବି କରିନଉ, ତୋ ଗହଣାରେ ହାତ ଦବୁ କୋଉ ମୁହଁରେ ?
ନମିତା ଠିକ ସମୟରେ ବିଲ କାମ ନହେଲେ ଧାନ ହବ ନେଇଁ । ବର୍ଷକର ଆହାର ଜାଣୁ ଜାଣୁ ହାତଛଡା ହେଇଯିବ ।
ସାବିତ୍ରୀ : ତୁ ମାଆ ପିଲାଲୋକ । ଏସବୁ ଘର କଥାରେ ମୁଣ୍ଡ ପୁରୋଉଚୁ

କାହିଁକି ?

ନମିତା ଉପାସ ରହି ସୁନା ଗହଣା ପିନ୍ଧିଲେ ଲୋକେ କହିବେ ଏ ଗହଣା ସୁନାର ନୁହେଁ ପିତଳର । ସୁନା ଗହଣା ପିନ୍ଧି କିଏ କ'ଣ ଉପାସ ରହେ ?

ସାବିତ୍ରୀ ତୋ ଗହଣା ବିକିଲେ ଲୋକେ ଆମକୁ କ'ଣ କହିବେ ?

ନମିତା ଗହଣା ବିକିବା କଥା କିଏ କାହିଁକି ଜାଣିବ ?

ସାବିତ୍ରୀ କାନ ଖାଲି ହେଲେ ଜାଣିବେ ନେଇଁ ?

ନମିତା ଏ ହଳକ ବିକି ପଚାଶ, ଷାଠିଏ ଟଙ୍କାର ରୋଲଗୋଲଡ୍‌ର ଅବିକଳ ଏମିତି ହଳେ ବଜାରରୁ କିଣି ଆଣିଲେ ମୁଁ ପିନ୍ଧିବି । ଆଉ କିଏ କାହିଁକି ଜାଣିବ ?

ସାବିତ୍ରୀ ନକଲି ଗୁଡାକ ତୁ ପିନ୍ଧିବୁ ?

ନମିତା ଅବେଳରେ ବନ୍ଧା ପକେଇ କିମ୍ବା ବିକି ଭାଙ୍ଗି ଦରକାର ମେଣ୍ଟେଇବା ପାଇଁ ସୁନା ଗହଣା ପିନ୍ଧିବା କଥା । ଦରକାର ମେଣ୍ଟିଗଲା ପରେ ନକଲି ଗହଣା ପିନ୍ଧିବାରେ କ'ଣ ଅସୁବିଧା ଅଛି ?

ସାବିତ୍ରୀ ଏଇଲେ ସିନା ତୁ କହୁଚୁ ପରେ ତୋ ମନ କଷ୍ଟ ହବ ।

ନମିତା ନାଇଁ ବୋଉ ତମେ ନିଅ, ମୁଁ ମନଖୁସିରେ ଦଉଚି । ନନାଙ୍କୁ ଦିଅ । ସିଏ ବିକ୍ରିକରି ବିଲ ବାଛନ୍ତୁ ।

(ଫ୍ଲାସ ବ୍ୟାକ୍ ଶେଷ । ଫ୍ଲାସ ବ୍ୟାକ୍ ଶେଷ ହେଲା ବେଳକୁ ଦେଖାଗଲା ହର ପ୍ରସନ୍ନ ଓ ନମିତା ତାଙ୍କ ଭୁବନେଶ୍ୱର ବାସଭବନରେ ଠିଆ ହୋଇଛନ୍ତି । ହର ନମିତାଙ୍କ ମୁହଁକୁ ଚାହିଁଥିଲେ ।)

ହର ଯୋଉ ନମିତା ଦିନେ ସମୁଦାୟ ପରିବାର ବିଷୟରେ ଚିନ୍ତା କରିଥିଲା ସେ ନମିତା ଆଜି ବଦଳି ଯାଇଚି । ତାକୁ ଚିହ୍ନି ହେଉ ନାହିଁ । ଏବେ ଖାଲି ନିଜ କଥା, ନିଜ ପିଲାଙ୍କ କଥା, ନିଜ ଘର କଥା ଚିନ୍ତା କରୁଚି ।

ନମିତା ମଣିଷ ନିଜେ ଚେଷ୍ଟା କଲେ କ'ଣ ବଦଳି ପାରେ ? ପରିସ୍ଥିତିର ରଙ୍ଗ ଲାଗି ଲାଗି ମଣିଷ ଚେହେରା ବଦଳି ଯାଏ । ତମେ ତ ଜାଣିଚ ମୋର ଆଉ ଯେତେକ ଗହଣା ଥିଲା ହାତ, ବେକ,

କାନ, ନାକ ସବୁ ଫିଙ୍ଗୁଳା କରି ତମ ସାନ ଭଉଣୀ ଜ୍ୟୋତି ବାହାଘରକୁ ମୁଁ ସବୁ ଦେଇଚି ।

ହର ଆମ ବାହାଘରର ଠିକ୍ ଦ୍ୱିତୀୟ ବର୍ଷରେ ତୁମେ ଏ ରାଜଧାନୀକୁ ଆସିଥିଲ ତମର ମନେଥିବ ? ଜମା ଚାରି ମାସର ରହଣି ଭିତରେ ତମେ ଚବିଶ ଥର କାନ୍ଦିଚ ଗାଆଁକୁ ଫେରି ଯିବାକୁ । ସେତେବେଳେ ତୁମର ଶାଶୁ, ଜାଆ, ନଣନ୍ଦ, ପୁତୁରା, ଝିଆରୀ ମନେ ପଡୁଥିଲେ ।

ନମିତା ଠିକ୍ ଚାରି ମାସ ରାଜଧାନୀରେ ରହିଲା ପରେ ମୁଁ ପୁଣି ଗାଆଁକୁ ଫେରି ଯାଇଥିଲି ।

ହର କିନ୍ତୁ ଚିନୁର ଜନ୍ମ ବେଳକୁ ତମେ ରାଜଧାନୀ ଆସିଛ ଯେ ଗାଆଁକୁ ଫେରିବା ନାଆଁ ଆଉ ଧରୁନା । ଯଦି କୌଣସି ବର୍ଷ ପୂଜା ଛୁଟିରେ ଗାଆଁକୁ ଯାଉଚ, ତେବେ ସେଇ ଛୁଟିଏ, ଛୁଟିଏ ଯିବା ଆଉ ଆସିବା । ଗାଆଁରେ ଚଳିବାକୁ ଏଣିକି ତୁମକୁ ଡର ଲାଗୁଛି । ଗାଆଁରେ କୂଅରୁ ପାଣି କାଢ଼ି ଏତେ ଲୋକଙ୍କ ରୋଷେଇ କରିବା, ବେଳ ଅବେଳରେ ଏତେ ଲୋକଙ୍କ ପାଇଁ ଖାଇବାକୁ ବାଢ଼ିବା, ବାସନ ଧୋଇବାକୁ ତମେ ଭୟ କରୁଚ ।

ନମିତା ସତ କହିଲ, ତମେ ଆଉ ଏକ କାଳୀନ ମାସେ ଗାଆଁରେ ରହି ପାରିବ ?

ହର ଏଠିକି ଆସିବା ଆଗରୁ ମୁଁ ଗାଆଁରେ ଥିଲି କେମିତି ?

ନମିତା ମୁଁ କ'ଣ ନଥିଲି ?

ହର ତମେ ସେଇ ନମିତାଟି ଯିଏ ହାତେ ଓଢ଼ଣା ଦେଇ ଘର କୋଣରେ ବସିଥିଲା ? ରାତି ପାହାନ୍ତାରୁ କଂସା, ବାସନ ମାଜି, ଘର ଦୁଆର ଓଳେଇ ଭୋରୁ ଭୋରୁ ଗାଧୋଇ ଓଦାଲୁଗା ପିନ୍ଧି ଘରେ ପହଞ୍ଚି ତୁଳସୀ ଚଉରା ପାଖରେ ସୂର୍ଯ୍ୟଙ୍କୁ ପାଣି ଟେକିଲା ବେଳକୁ ସୂର୍ଯ୍ୟ ନିଦରୁ ଉଠି ନଥାନ୍ତି ।

ନମିତା ତମେ କ'ଣ ଭାବୁଚ ସବୁବେଳେ ମୁଁ ଘର କ'ଣରେ ଓଢ଼ଣା ଦେଇ ବସିଥାଆନ୍ତି ? ତମେ ତମ ପରିବାର ଲୋକେ ଅନ୍ଧକୁ ବାଟ କଢ଼େଇବା ପରି ମୋ ହାତ ଧରି ତାଙ୍କ ପଛେ ପଛେ ଚଲଉ ଥାଆନ୍ତେ ? ଜୀବନ ସାରା ମୁଁ ତମ ମାନଙ୍କ ଆଖିରେ

ବାଟ ଚାଲୁ ଥାଆନ୍ତି ?

ହର — ନାଇଁ, ତମ ନିଜ ଆଖିରେ ବାଟ ଚାଲ, ପାଦରେ କଣ୍ଟା ଖୁଞ୍ଚ ମାଡ, ରକ୍ତର ଅଳତା ପିନ୍ଧ । କିନ୍ତୁ ଅନ୍ୟମାନଙ୍କୁ ଅନ୍ଧ ଭାବି ବାଟ କଢ଼ାଇବାକୁ ଉଦ୍ୟମ ନକର ଯେମିତି ।
(ବାହାରେ ଗୋଟିଏ ଜିପ୍ ଆସି ରହିବା ଓ ହର୍ଣ୍ଣ ବଜାଇବା ଶବ୍ଦ) ନମିତା, ମୋ ପ୍ୟାଣ୍ଟ ସାର୍ଟ ଆଣିଲ ଆମ ଅଫିସ ଗାଡି ଆସିଲାଣି, ମୁଁ ଅଫିସ୍ ଯିବି ।

ନମିତା — ମଲା, ଛୁଟି ଦିନରେ ଅଫିସ ନଗଲେ ହଉ ନେଇଁ ?

ହର — ନାଇଁ ମତେ ଯିବାକୁ ହେବ । ଅଫିସ୍‌ରେ ଜରୁରୀ କାମ ଅଛି ।

ନମିତା — ତମେ ପରା ପ୍ୟାଣ୍ଟ ପିନ୍ଧିଚ ?

ହର — ଇଏ ଚଳିବ ? ହଉ ଥାଉ ଚଳେଇ ଦବା । ସାର୍ଟଟା ଦିଅ ।

ନମିତା — ନିଅ, ଏଇ ଧଳା ସାର୍ଟଟା ନିଅ ।

ହର — (ପିନ୍ଧୁ ପିନ୍ଧୁ) ମୁଁ ଯାଉଚି ବିଇଟା ବେଳକୁ ଫେରି ଆସିବି ।

ନମିତା — ତମେ ମନା କରି ଦେଇ ଆସିଲ ନେଇଁ । ମୋର ଘରେ ଅନେକ କାମ, ମୁଁ ଛୁଟି ଦିନରେ ଅଫିସ୍ ଆସି ପାରିବି ନେଇଁ ।

ହର — ଘର କଥା ଅଫିସ୍‌ରେ କହି କିଛି ଲାଭ ନାହିଁ । କିଏ କାହା କଥା ଶୁଣୁଚି ?

ନମିତା — ଆଉ ଘରେ ଅଫିସ କଥା କହୁଚ କେମିତି ? ସେ କଥା ହେଇ ପାରିବ ନେଇଁ, ତମେ ଅଫିସ ଗାଡି ଫେରେଇ ଦିଅ । ଆମର ଗହମ ପେଶା ହବ, ପିଲାଙ୍କ ବାଳ କଟାହବ, ତାଙ୍କ ଜାମାପେଣ୍ଟ ସିଲେଇ ପାଇଁ ଦରଜୀକୁ ମାପ ଦବାକୁ ପଡିବ ।

ହର — କାମ ତାଲିକାଟା ସେତିକିରେ ରଖ, ଆଉ ଲମ୍ବାଅନା । ମୁଁ ଆସିଲେ ଉପର ଓଳି ସବୁ କରିବି । ମୁଁ ଯାଉଚି । ମତେ ଅନେଇବ ନେଇଁ, ମୋ ପେଇଁ ରଖିକି ତମେ ଖାଇନବ ।

ନମିତା — ବେଶି ଡେରି କରିବ ନେଇଁ ।
(ହର ପ୍ରସନ୍ନଙ୍କ ପ୍ରସ୍ଥାନ । ନମିତା ଦୁଆର ମୁହଁରେ ତାଙ୍କ ଯିବା ବାଟକୁ ଅନେଇଁ ରହିଲେ ।)



ଆନନ୍ଦ ଚନ୍ଦ୍ର ପହି

# ପଞ୍ଚମ ଦୃଶ୍ୟ

(ହର ପ୍ରସନ୍ନଙ୍କ ଘର । ହର ପ୍ରସନ୍ନ ଭାତ ଓ ମାଂସ ତର୍କାରି ଖାଉଥିଲେ । ତାଙ୍କ ପାଖରେ ବସି ଥିଲେ ନମିତା । ଦରଖିଆ ହୋଇ ଭାତ ଥାଳି ଛାଡି ହର ପ୍ରସନ୍ନ ଉଠିଗଲେ ।)

ନମିତା ଏମିତି ଦରଖିଆ ହେଇ ଉଠି ଯାଉଚ ?

ହର (ଅନ୍ୟମନସ୍କ ଭାବେ) ଉଁ ।

ନମିତା ମାଂସକୁ ତମେ କେତେ ଭଲ ପାଅ, ଦରଖିଆ ହେଉ ଉଠି ଆସିଲ ଯେ ? କ'ଣ ତରକାରି ଭଲ ହେଇ ନେଇଁ ?

ହର ହଁ ।

ନମିତା କ'ଣ ହଁ ? ତରକାରି ଭଲ ହେଇଚି ହିଁ, ନା ତରକାରି ଭଲ ହେଇ ନେଇଁ ହଁ ?

ହର ତରକାରି ଭଲ ହେଇଚି ।

ନମିତା ତମେ ନଖାଇ ଉଠି ଆସିଲ ?

ହର (ଖଟ ଉପରେ ବସିଲେ) ମତେ ଭଲ ଲାଗିଲା ନେଇଁ ।

ନମିତା : ଇଏ କୋଉ ଆଡର କଥା ? ତରକାରି ଭଲ ହେଇଚି ବୋଲି ଯୋଉ ପାଟି କହୁଚି ସେଇ ପାଟିକୁ କେମିତି ତରକାରି ଭଲ ଲଗୁନେଇଁ ? ତମର ଆଜି କ'ଣ ହେଇଚି ?

ହର : କିଛି ନାହିଁ ।

ନମିତା ସେଇ କିଛି ନାହିଁଟା ପୁଣି କ'ଣ ?

ହର ମୋ ବୋଉ, ବଡ ଭାଇ, ଭାଉଜ ଆଉ ପୁତୁରା, ଝିଆରୀ ପ୍ରତିଦିନ ପେଟପୁରା ଭାତ ଖାଇବାକୁ ପାଉ ନଥିବା ବେଳେ ମୁଁ ଏଠି ମାଂସ ତରକାରି କେମିତି ଖାଇବି ?

ନମିତା ସେଇଥି ପାଇଁ ତମେ ଓପାସ ଶୋଇବ ?

ହର ଖାଇ ବସିବା ବେଳେ ପାଣି ଗ୍ଲାସ ଭିତରେ ମୋ ଭାଇଙ୍କ ଛବି

ଦିଶିଲା । ସିଏ ପଖାଳ କଂସା ପାଖରେ ବସିଚନ୍ତି । ତାଙ୍କ ଚାରି ପାଖରେ ତାଙ୍କର ଚାରୋଟି ପିଲା । ତୋରାଣି ମନ୍ଦେ ପିଇ ଭାଇ ଉଠିଗଲେ । ପିଲାମାନେ ପଖାଳ କଂସାଟାକୁ ଧରି ମାଡଗୋଳ, ମରାମରି ।

ନମିତା ତମର ମାସିକ ଆୟ ଯାହା ସେଥିରେ ଗୋଟିଏ ପରିବାର ଚଳିବା କଷ୍ଟ । ତୁମେ ଦୁଇଟିଯାକ ପରିବାର ଚଳାଇବାକୁ ଚେଷ୍ଟା କରି ଦୁଇଟିଯାକ ପରିବାର ଆଜି ଅଚଳ ।

ହର ଆମେ ଆଉ ଟିକେ କଣ୍ଟ୍ରୋଲ କରି ଚଳିଲେ ଆଉ ଅଧିକ କିଛି ଗାଆଁକୁ ପଠେଇ ହୁଅନ୍ତା । ତମେ ଟିକେ ଚେଷ୍ଟା କଲେ ପାରିବ ନମି ।

ନମିତା ତମେ କ'ଣ କହୁଚ ମୁଁ ସବୁ ଜିନିଷ ବେଶୀ ଖର୍ଚ୍ଚ କରି ଦଉଚି ?

ହର ମୁଁ ସେକଥା କହୁ ନାହିଁ । ହେଲେ ତମେ ଚାହିଁଲେ ସବୁଥିରୁ ଆଉ କିଛି କିଛି କମେଇ ପାରିବ ।

ନମିତା କୋଉଥିରୁ କମେଇବି ? କ'ଣଟେ ଆମେ ରଜା ମହାରାଜା ପରି ଖର୍ଚ୍ଚ କରୁଚୁ ? ଶାଢ଼ିନା, ଗହଣା ? କୋଉଥିରେ ମୁଁ ପୋତି ହେଇ ପଡିଚି ନା ମୋ ପିଲାଏ ଲଗେଇ ପିନ୍ଧି ତୋଲାର ମୋଲାର ହେଇଗଲେ ଯେ କମେଇ ଦେବି ?

ହର ଆଜିକାଲି ବଜାର ଦର ଯାହା ହେଲାଣି ଜାଣିଚ । ଆଳୁ କିଲୋ ପାଞ୍ଚଟଙ୍କା, ବାଇଗଣ କିଲୋ ଦଶଟଙ୍କା, ସାରୁ କିଲୋ ଦଶଟଙ୍କା, କଲରା କିଲୋ ବାରଟଙ୍କା । ତମେ ଟିକେ ଦେଖି ଚାହିଁକି ପରିବା କାଟ ।

ନମିତା ଅତି କମ୍‌ରେତ ସବୁଥିରୁ ଗୋଟେ ଗୋଟେ କାଟିବି ? ମୁଁ ଯାହା ଯେତିକି କରୁଚି ତାଠୁ କମ୍ ମୋତେ କରି ଆସିବ ନେଇଁ । ତମେ ସବୁ ଖାଇ ସାରିବା ବେଳକୁ ମୋ ପାଇଁ ତରକାରି ନଥାଏ । ସବୁଦିନ କଡେଇ ଚାଟି, ନହେଲେ ଆଳୁ ପୋଡି ମୁଁ ଭାତ ଖାଏ । ଆଉ କମେଇ ଦେଲେ ମୋ ସାଙ୍ଗରେ ତୁମକୁ ଆଳୁପୋଡା ଖାଇବାକୁ ପଡିବ ।

(ଟେବୁଲ ଉପରେ ଥିବା ଘଣ୍ଟାରେ ଆଲାରାମ ବାଜିଲା । ହର ପ୍ରସନ୍ନ ଘଣ୍ଟାର ଆଲାରାମ୍ ବନ୍ଦ କଲେ ।)

ଆନନ୍ଦ ଚନ୍ଦ୍ର ପତି

| | |
|---|---|
| ହର | ଦିନ ବାରଟା ବେଳେ କିଏ ଘଣ୍ଟାରେ ଆଲାରାମ ଦେଇଥିଲା ? |
| ନମିତା | ସେଇ ଚିନୁ ଦେଇଥିବ । |
| ହର | କୁଆଡେ ଗଲେ ଭାଇ ଭଉଣୀ ହଳକ ? |
| ନମିତା | ଖାଇ ଦେଇ ଖେଳିବାକୁ ବାହାରି ଗଲେ । ମୁଁ ଯେତେ ମନା କଲି ମାନିଲେ ନେଇଁ । |
| ହର | ମୁଁ ଦେଖୁଚି ସିଏ କୁଆଡେ ଗଲେ । (ଯିବାକୁ ବାହାରିଲେ) |
| ନମିତା | ସିଏ କୁଆଡେ ଖେଳୁଥିବେ, ତମେ କ'ଣ ତାଙ୍କୁ ପାଇବ ? |
| ହର | ଖରାରେ ଛୁଆ ଦିଇଟା ନାଚ କରୁଥିବେ, ମୁଁ ଖରାକୁ ଡରିକି ଘରେ ଶୋଇବି । |
| ନମିତା | ସିଏତ ଖରାରେ ବୁଲୁଚନ୍ତି, ତମେ ପୁଣି ଖରାଟାରେ ହଇରାଣ ହବ କାଇଁକି ? |
| ହର | ତମେ ଛୁଆ ଦିଇଟାଙ୍କୁ ଜମା ଆକଟ କରୁନା । ସେମାନେ ମଣିଷ ହେବେ ନା ପଣସ ହେବେ ? |
| ନମିତା | ଏ ଘରେ କିଏ କାହା କଥା ମାନୁଚି ଯେ ? |
| ହର | ତମ କଥା ଆଉ କିଏ ମାନିଲା ନାହିଁ ? |
| ନମିତା | ଏ ଖରାଟାରେ ତମେ ନଗଲେ ହୁଅନ୍ତା ନେଇଁ ? |
| ହର | ଓଃ, ଏଇ କଥା ? ଆଣ ଛତାଟା ଆଣ । ତମ କଥା ମାନି ମୁଁ ଖରାରେ ନଯାଇ ଛାଇରେ ଯିବି । ଏଥର ହେଲାତ ? |
| ନମିତା | ତମକୁ ପାରି ହବ ନେଇଁ । ନିଅ ଛତା ନିଅ । କିଛି ଖାଇନା, ଶୀଘ୍ର ଆସିବ । |
| ହର | ହଉ । |
| | (ନମିତା ତାଙ୍କ ଯିବା ବାଟକୁ ଚାହିଁ ରହିଲେ ।) |



ଆନନ୍ଦ ଚନ୍ଦ୍ର ପହି

## ଷଷ୍ଠ ଦୃଶ୍ୟ

(ହର ପ୍ରସନ୍ନଙ୍କ ଘର । ସମୟ ସଂଧ୍ୟା । ହରପ୍ରସନ୍ନ ଅଫିସ୍‌ରୁ ଫେରିଛନ୍ତି)

ହର — ନମିତା ! ନମିତା ! କୁଆଡେ ଗଲି କି ?

ନମିତା — (ରୋଷେଇ ଘରେ ଥାଇ) କାହିଁକି ଏଡେ ପାଟି କରୁଚ ?

ହର — ରୋଷେଇ ଘରେ କ'ଣ କରୁଚ ? ଏଠିକି ଆସ ।

ନମିତା — ସେଇଠୁ କହିଲେ ମତେ ଶୁଭୁଚି, ମୁଁ କାଲୁଣୀ ନୁହଁ ।

ହର — ଆମ ବିଭାଘର ପୂର୍ବରୁ ସେଇଟା ପରୀକ୍ଷା ନକରି କ'ଣ ମୁଁ ଛାଡିଚି ?

ନମିତା — ଆଉ କ'ଣ ମୋ ମୁହଁ ନଦେଖିଲେ ତୁମ ପାଟିରୁ କଥା ବାହାରିବ ନେଇଁ ?

ହର — ସବୁକଥା କ'ଣ ବଡ ପାଟିରେ କୁହାଯାଏ ?

ନମିତା — ଏମିତି କି କଥା କହିବ କି ?

ହର — କଥାଟା କେମିତିକା ଏଇଠିକି ଆସିଲେ ଶୁଣିବ ।

ନମିତା — (ଲୁଗା କାନିରେ ହାତ ପୋଛି ପୋଛି ପ୍ରବେଶ) କ'ଣ ଭଲ ନା ମନ୍ଦ ?

ହର — କଥାଟା ତୁମକୁ ଭଲ ଲାଗିବ କି ମନ୍ଦ ଲାଗିବ, ମୁଁ କେମିତି କହିବି ?

ନମିତା — ଭଲଟାତ ସମସ୍ତଙ୍କ ପାଇଁ ଭଲ, ମୋ ପାଇଁ ପୁଣି ଅଲଗା କ'ଣ ? (ପାଖକୁ ଆସି) କ'ଣ କହିବ କୁହ ।

ଅର — ଆଉ ଟିକେ ପାଖକୁ ଆସ ।

ନମିତା — (ଆଉ ଟିକେ ପାଖକୁ ଗଲେ) କୁହ ।

ହର — ଆଉ ଟିକେ ପାଖକୁ ଆସ । ଠିକ୍ ମୋ ମୁହଁ ପାଖକୁ ତୁମ କାନଟା ଆଣ ।

| | |
|---|---|
| ନମିତା | କେତେ ସୁଆଙ୍ଗ ହଉଚମ ? କୁହ । |
| ହର | କାନ ନ ବଢ଼େଇଲେ ନାହିଁ ହାତଟା ବଢ଼ା । |
| ନମିତା | କ'ଣ କହିବ ପରା ? |
| ହର | ହାତ ବଢ଼ଉନା, କଥାଟା କାନରେ ନନେଇ ହାତରେ ନେବ । |
| ନମିତା | ସବୁ କଥା ତୁମର ଖାଲି ପରିହାସ । |
| ହର | ଏଇଟା କ'ଣ ଦେଖିଲ ? (ବ୍ୟାଗରୁ ବାହାର କଲେ ଅମୃଲସ୍ପ୍ରେ) |
| ନମିତା | ଅମୂଲସ୍ପ୍ରେ । କାହାର ? |
| ହର | ଆମର । |
| ନମିତା | (ଖୁସି ହୋଇ) ମୁଁ କୋଉ ଦିନରୁ କହିବି କହିବି ବୋଲି ହୋଉଥିଲି । ତମେ ଚିଡିବ ବୋଲି କହୁନଥିଲି । କିଏ କେତେବେଳେ ଆସିଲେ ଚା'ଟିକେ ଦେଇ ହେଉ ନଥିଲା । ଭଲ କଲ ଆଣିଲ । |
| ହର | ପହରି ଦିନ ଆମ ଅଫିସରୁ ବିଶ୍ୱାଳବାବୁ, ମିଶ୍ରବାବୁ ଆସିଥିଲେ । ତାଙ୍କୁ ଟିକେ ଚା' ଦେଇ ହେଲା ନେଇଁ । ସେଇଥି ପାଇଁ ନେଇ ଆସିଲି ? |
| ନମିତା | ପଇସା କୋଉଠୁ ଆଣିଲ ? |
| ହର | କୋଉଠୁ ଆଣିବି ? |
| ନମିତା | ବାକି କରି ଆଣିଥିବ ? |
| ହର | ମୁଁ ଜିନିଷ ବାକିରେ ଆଣିବାକୁ ପସନ୍ଦ କରେ ନାହିଁ । |
| ନମିତା | ତମ କଥା ଶୁଣି ମତେ ହସ ମାଡୁଚି । |
| ହର | ଏଥିରେ ହସିବାର କ'ଣ ଅଛି ? |
| ନମିତା | ଏକଥା ଆଉ କିଏ କହିଲେ ସିନା ସୁନ୍ଦର ଦିଶନ୍ତା, ତମ ମୁହଁରେ ଏକଥା ମୋତେ ସୁନ୍ଦର ଦିଶୁନି । |
| ହର | କାଇଁକି ? ମୋ ମୁହଁଟା ଏମିତି କ'ଣ ହେଇଚିକି ? |
| ନମିତା | କିଏ ସିନା ମାସର ଶେଷ ଆଡକୁ ଧାର କରଜ କରେ କିନ୍ତୁ ତମରତ ମାସର ମଝିରୁ ଧାର, କରଜ ଆରମ୍ଭ ହୁଏ । |
| ହର : | ମୁଁ ଧାର କରେ ମାନୁଚି । କିନ୍ତୁ ମୁଁ ଦୋକାନରୁ ବାକି ଆଣେ ନାହିଁ । |
| ନମିତା | ଧାର କରଜ କରିବା ଆଉ ଦୋକାନରୁ ବାକି ଆଣିବା ଭିତରେ |

ତଫାତଟା କ'ଣ, ମୁଁ ବୁଝିପାରୁ ନାହିଁ ।

ହର ଢ଼େର ତଫାତ ଅଛି । ବାକି ଆଣିଲେ ଖର୍ଚ୍ଚ ବଢ଼େ । ଦୋକାନୀ ବେଳେ ବେଳେ ଦୟା ଦେଖାଇ ଜିନିଷ ଦେଲାପରି ବ୍ୟବହାର ଦେଖାଏ ।

ନମିତା ହଉ ହେଲା । ଟଙ୍କା ଧାର କରି ଦୋକାନରୁ କିଣିକି ଆଣିଚତ ? କାହାଠୁ ଧାର କଲ ?

ହର ପରୀକ୍ଷିତ ବାବୁ ।

ନମିତା ଶୁଝିବ କେମିତି ?

ହର ଶୁଝିବାର ବାଟ ନକରି ମୁଁ କ'ଣ ଧାର କରେ ?

ନମିତା ଏମିତି ବାଟ ଯଦି ଆଗରୁ ଜଣାଥିଲା ଆଜିଯାଏ କାଇକି କରୁନଥିଲ ? ବାଟଟା କ'ଣ ମୁଁ ଟିକେ ଶୁଣେ ।

ହର ସମୟ ଆସିଲେ ବଳେ ଜାଣିବ, କହିବା ଦରକାର ନାହିଁ ।

ନମିତା ସମୟ କେବେ ଆସିବ ପୁଣି କୋଉବାଟେ ପଳେଇବ ମୁଁ ତାକୁ କ'ଣ ଜଗି ବସିଥିବି ?

ହର ସମୟ ଆଉ ବେଶୀ ବାଟରେ ନାହିଁ । କାଲିତ ମାସର ତିରିଶ ତାରିଖ । ପହରି ଦିନଠାରୁ ଆମର ଦୁଧ ଆସିବା ବନ୍ଦ୍ ।ଦୁଧ ପାଇଁ ଯୋଉ ପଇସା ଦିଆଯାଉଥିଲା ସେଇ ପଇସାରେ ମୁଁ ପରୀକ୍ଷିତ ବାବୁଙ୍କ ଧାର ଶୁଝିଦେବି ।

ନମିତା ନାଇଁ, ସେ କଥା ହେଇ ପାରିବ ନାହିଁ ।

ହର ହେଇ ପାରିବ ନେଇଁ କ'ଣ ? ମୁଁ ଗୋଉଡକୁ ମନା କରିଦେଇଛି ।

ନମିତା ଗୋଉଡକୁ ମନା କରିବା ଆଗରୁ ମତେ ଟିକେ ପଚାରି ପାରିଲ ନାହିଁ ?

ହର ତମକୁ ପଚାରିଥିଲେ ତମେ ଜମା ରାଜି ହେଇ ନଥାନ୍ତ ।

ନମିତା ହଁ, ଏ ଘରେତ ମୁଁ ଚାକରାଣୀ ଅଛି ? ତମ ଘରଚଳୁ, ନଚଳୁ, ତମ ପିଲା ଭଲରେ ରୁହନ୍ତୁ କି ନରୁହନ୍ତୁ ମୁଁ ଆଉ କୋଉ କଥାରେ ପାଟି ଫିଟେଇବି ନେଇଁ ।

ହର କୋଉ ଥିରେ ପାଟି ନଫିଟା ପଛେ, ତମେ ଏମିତି ନାକ ଫୁଲାନା ।

ଆନଂଦ ଚଂଦ୍ର ପହି

| | |
|---|---|
| ନମିତା | ମୁଁ ନାକ ଫୁଲେଇଲେ କେତେ, ମୁହଁ ଫୁଲେଇଲେ କେତେ ? ତମେ ରୋଜଗାର କରୁଚ, ତମ ପଇସା ତମେ ତମର ଯେମିତି ଖର୍ଚ୍ଚ କରିବ. ମୋର ସେଥିରେ କ'ଣ କହିବାର ଅଛି ? |
| ହର | ଏତିକିନା ଆଉ କିଛି କହିବ ? |
| ନମିତା | ମୁଁ କାହିଁକି କ'ଣ କହିବି, ତମକୁ ଯାହା ସୁନ୍ଦର ଦିଶୁଚି, ତମେ ସେଇଆ କର । |
| ହର | ନାଗଁ ନମି । ତମେ ଆଉ କିଛି କୁହ । ମୁଁ ପ୍ରସ୍ତୁତ ହୋଇ ଆସିଛି ତମେ ଆହୁରି ଅନେକ କହିବ, ମୁଁ ସବୁ ଶୁଣିବି କିଛି କହିବି ନାହିଁ । |
| ନମିତା | ଦୁଧ ପାଆକ ଦହି ହଉଥିଲା ଚିନୁ, ମିନୁ ଶେଷ ଭାତରେ ଟିକେ ଟିକେ ପକେଇକେତେ ଖୁସିରେ ଖାଉଥିଲେ । ତମେବି ତ ଶେଷ ଭାତରେ ଦହି ଦି' ଚାମଚ ପକେଇ ଖାଇବାକୁ ଭଲ ପାଅ । |
| ହର | କ'ଣ କରିବା ? ଯେମିତି ହେଲେ ଏଠି ଚଳିବାକୁ ହେବ । ଘରକୁ ଆସୁଥିବା ଭଦ୍ରଲୋକ ମାନଙ୍କୁ ଚା' କପେ ନଦେଲେ ନିହାତି ଲାଜ ଲାଗିବ । |
| ନମିତା | ସେମାନଙ୍କ ବସିବା ପାଇଁ ଭଲ ଚୌକି ଖଣ୍ଡେ ରଖିଚନା ? |
| ହର | ବରାଦ ଦେଇଚି । |
| ନମିତା | ଦଶ ବର୍ଷ ହେଲା ଚାକିରି କଲଣି ଚଉକି ଦିଖଣ୍ଡ କରିପାରିନା, କ'ଣ ନା ବରାଦ ଦେଇଚି । ଏଇ ଫୁଟପାଥ ଚଉକିଟାରେ କାହାକୁ ବସିବାକୁ କହିଲେ ଲାଜ ଲାଗୁଚି । |
| ହର | ଆମ ଅଫିସ୍ ପିଅନ ଘର ନୟାଗଡରେ । ତାକୁ କହିଚି ଦିଖଣ୍ଡ ସାଗୁଆନ କାଠର ଚଉକି ଶସ୍ତାରେ ଆଣିବ । |
| ନମିତା | ଏଯାଏ କ'ଣ ସାଗୁଆନ କାଠ ମିଳୁ ନେଇଁ । (ଏଇ ସମୟରେ କବାଟ ଖଡ ଖଡ ହେଲା) |
| ହର | ଦେଖିଲ କିଏ ଡାକୁଚି । (ନମିତା କବାଟ ଖୋଲିବାକୁ ଯାଉ ଯାଉ ଫେରି ଆସିଲେ) |
| ନମିତା : | ମିନୁ କି ଚିନୁ ଯଦି ହେଇ ଥିବେ ଏ ଅମୂଲସ୍ପ୍ରେ ଖାଇବାକୁ ଯିଦ୍ କରିବେ । ରୁହ ମୁଁ ଏ ଡବାଟାକୁ ସେ ଘରେ ଲୁଚେଇ ଦେଇ |

ଆସେ ।

(ନମିତା ଅମୂଲସ୍ରେ ତବାଟାକୁ ସେ ଘରକୁ ନେଇ ଗଲେ)

ମିନୁ : (ବାହାରୁ ଡାକିଲା) ବୋଉ ! କବାଟ ଖୋଲ ।

ହର (କବାଟ ଖୋଲିଲେ । ଘର ଭିତରକୁ ପଶି ଆସିଲା ମିନୁ)
ତୁ ଆସିଲୁ, ନନା କୁଆଡେ ଗଲା ?

ମିନୁ : ସିଏ ତାର ଖେଳୁଚି ।

ହର : ସଂଜ ହେଲାଣି ତାର ଖେଳ ସରୁ ନେଇଁ ?

ନମିତା (ପ୍ରବେଶି) ତମେ ସବୁଦିନ ଏମିତି ଚଞ୍ଚଳ ଫେରନ୍ତକି ଦେଖନ୍ତ ରାତି ଘଡିକ ପର୍ଯ୍ୟନ୍ତ ସେ ଟୋକାର ଖେଳ ଚାଲିଚି । ପଢ଼ାରେ ଜମା ମନ, ଧ୍ୟାନ ନାହିଁ ।

ମିନୁ ମୁଁ ନନାକୁ ଡାକିଲି ସିଏ ଆସିଲା ନେଇଁ ।

ନମିତା ତମେ ନିଇତି ରାତି ଆଠଟା, ନଅଟାରେ ଅଫିସିରୁ ଫେରିବ । ତୁମ ପୁଅ ଝିଅ ମୂର୍ଖ ହେବେ ।

ହର ରାତିରେ କ'ଣ ସେମାନେ ପଢୁ ନାହାଁନ୍ତି ?

ନମିତା ଖେଳି ଖେଳି ତ ରାତି ଘଡିକୁ ଘରକୁ ଫେରୁଚନ୍ତି । କ'ଣ ଖଣ୍ଡେ ଖାଇ ଦେଲେ ନିଦ ଆସୁଚି । ବହିଟେ ଲେଖାଁ ଧରି କାଳିସି ଲାଗିଲା ପରି ଝୁଲୁଚନ୍ତି ।

ହର କାଇଁ ? ତମେତ ଏଯାଏ ମତେ ଏକଥା କହିନା ?

ନମିତା ମୁଁ ସବୁକଥା କ'ଣ କହିବି ? ତମେ କ'ଣ ଦେଖୁନା ?

ହର ମିନୁ ! ସେଠି ଠିଆ ହେଇ କ'ଣ ଶୁଣୁଚୁ ? ଯା ପଢ଼ିବୁ ଯା ।

ମିନୁ ବୋଉ ! ମୋ ଖଡି ଡବାଟା ପାଉ ନେଇଁ ।

ନମିତା ସେ ଘର ପଟା ଉପରେ ଅଛି ।

ହର ଯାଉଚୁନା ପଢ଼ିବୁ ।
(ମିନୁର ପ୍ରସ୍ଥାନ)

ନମିତା ଛୁଆ ଦିଟା କ'ଣ ପଢୁଚନ୍ତି ବାପ ହେଇ ଦିନେ ତମେ ଦେଖିଚ ?

ହର ମତେ ବେଳ କାଇଁ ?

ନମିତା ତମକୁ ବେଳ ଯଦି ନାହିଁ ଟିଉସନ୍ ମାଷ୍ଟର ରଖ ।

ହର ଦେଖୁଚତ ପ୍ରତି ମାସରେ ଧାର କରଚ । ପର ମଣିଷ ପରି ଟିଉସନ୍ ମାଷ୍ଟର କଥା କେମିତି କହୁଚ ?

| | |
|---|---|
| ନମିତା | ତମର ସବୁ କଥାକୁ ନାହିଁ । ବିଶ୍ୱାଳବାବୁଙ୍କ ପିଲାଏ ଟିଉସନ୍ ହେଉଚନ୍ତି କେମିତି ? ସିଏତ ପୁଣି ତମରି ଚାକିରି କରିଚନ୍ତି । |
| ହର | (ରାଗିଯାଇ) ଆଉ କେତେ ଥର କହିବି ମୁଁ ଆଉ କାହା ସହିତ ସମାନ ନୁହଁ ବୋଲି ? ମୁଁ କେବଳ ମୁଁ । ସେ ନୁହଁ କି ସେମାନେ ନୁହଁ । ରାମବାବୁ ନୁହଁ କି ପରୀକ୍ଷିତବାବୁ ନୁହଁ । ମିଶ୍ରବାବୁ ନୁହଁ କି ବିଶ୍ୱାଳବାବୁ ନୁହଁ । |
| ନମିତା | ତମେ ଏମିତି ରାଗୁଚ କାଇଁକି ? |
| ହର | ଗାଆଁରେ ନନାଙ୍କ ପିଲାମାନେ ପାଠ ପଢ଼ିବା ପାଇଁ ବହି ଖାତା କଲମ ପାଉ ନଥିବା ବେଳେ ଏଠି ତମ ଛୁଆଙ୍କ ପାଇଁ ଟିଉସନ୍ ମାଷ୍ଟର ରଖିବି କୋଉ ମୁହଁରେ ? |
| ନମିତା | ନରଖ, ମୂର୍ଖ ହୁଅନ୍ତୁ । |
| | (ଏତିକି ବେଳେ ଆର ଘର ଥାକ ଉପରୁ କ'ଣ ଗୋଟେ ପଡିଯିବାର ଶବ୍ଦ ହେଲା) |
| ହର | କ'ଣ ହେଲା ? ସେ ଘର ଥାକରୁ କ'ଣ ଗୋଟେ ପଡିବା ପରି ଶବ୍ଦ ହେଲା ? |
| ନମିତା | ସେଇ ମିନୁ କୋଉଠି କ'ଣ ପକେଇଥିବ । |
| ହର | ଦେଖ, ଦେଖ କ'ଣ ପକେଇଲା । ମିନୁ ! ଏ ମିନୁ ! |
| ନମିତା | ଭାରି ବଦମାସ୍ ହେଲାଣି । ମିନୁ ! |
| | (ଦୁହେଁ ଆଗ ପଛ ହୋଇ ଆର ଘରକୁ ଗଲେ) |



# ଶେଷ ଦୃଶ୍ୟ

(ହରପ୍ରସନ୍ନଙ୍କ ଭୁବନେଶ୍ୱରସ୍ଥ ବାସଭବନ । ମିନୁ ଗୋଡ ବାଡେଇ ଏଁ ଏଁ ହୋଇ କାନ୍ଦୁଛି)

ନମିତା : କ'ଣ କିରେ ମିନୁ ! କାନ୍ଦୁଚୁ କାଇଁକ ?

(ମିନୁ ବେଶି ବେଶି କାନ୍ଦିଲା)

କ'ଣ ହେଇଚି କହୁନୁ ? ଚିନ୍ନୁ ତତେ ମାଇଲା ?

(ମିନୁ ସେମିତି କାନ୍ଦି ଚାଲିଲା)

ନମିତା ମାଇଲା ? କୋଉଠିକି ମାଇଲା ? ଏଇ ଗାଲକୁ ମାଇଲା ? (ମିନୁକୁ କୋଳକୁ ନେଇ ତା ଗାଲକୁ ଆଉଁସିଲେ) ଓହୋ, ମୋ ଝିଅର ଗାଲଟା ନାଲି ପଡି ଯାଇଚି । କେଡେ ନିରାଶିଆ ମାଡ ସେ ଟୋକା ମାରିଚି ?

ମନୁ (କାନ୍ଦୁ କାନ୍ଦୁ) ନାଇଁ ବୋଉ ! ଭାଇ ମତେ ମାରି ନେଇଁ ।

ନମିତା ଆଉ କିଏ ମାଇଲା ?

ମିନୁ ନାଇଁ କେହି ମାରି ନେଇଁ ।

ନମିତା ଆଉ ଏମିତି ବାଡେଇଲା ପିଟିଲା ପରି କାନ୍ଦୁଚୁ ?

ମିନୁ (କାନ୍ଦୁ କାନ୍ଦୁ) ଭାଇ ଦଉ ନେଇଁ ।

ନମିତା କ'ଣ ଦଉ ନେଇଁ ?

ମିନୁ ସିଏ ତାର ଗୁଡି ଉଡୋଉଚି ମତେ ଦଉ ନେଇଁ ।

ନମିତା ଚିନୁ କୁଆଡେ ଗଲା?

ମିନୁ ଡିଗଲ ଘର ଆଡେ ଦଉଡିକି ପଳେଇଲା ।

(ପ୍ରବେଶ କରିଚନ୍ତି ହର ପ୍ରସନ୍ନ)

ନମିତା ତମେ ତମର ଗଣ୍ଡଗୋଳ ବୁଝ, ମୁଁ ପାରିବି ନେଇଁ ।

ହର ମୁ ଘରେ ରହିଲେ ସବୁ ଅଡୁଆ ସୁତା ଆଣି ମୋ ଆଗରେ ଗଦେଇବ । ଗଣ୍ଠି ଫିଟାଉ ଫିଟାଉ ଦିନଟା କୋଉବାଟେ ଫୁର୍

କିନା ଉଡିଯିବ ମୁଁ ଜାଣି ପାରିବି ନେଇଁ ।

ନମିତା ଇଏ କି ଗଣିମ ? ଆହୁରି ମସ୍ତବଡ ବଡ ଗଣି ମୁଁ ଦିନ ରାତି ବସି ଫିଟାଉଚି ।

ହର ମୁଁ ଘରେ ଥିଲେ କିନ୍ତୁ ଯାହାଟିକେ ଅଡୁଆ ହେଲା ମୋ ଉପରକୁ ପକେଇ ଦଉଚ ।

ନମିତା ତା'ନକଲେ ତମେ କେମିତି ଜାଣିବ ତୁମ ଘରର କେତେ ଅଡୁଆ ମୁଁ ଫିଟାଉଚି ? କେତେ ଅଳି ଅର୍ଦ୍ଦଳି ମୁଁ ସମାଳୁଚି ?

ହର ଏବେ ବୁଝିଲି । ଆମର ଏ ପୃଥିବୀଟାକୁ ତମେ ବାସୁକି ପରି ନିଜ ମୁଣ୍ଡରେ ମୁଣ୍ଡେଇଚ । ହଉ, ତମେ ଟିକେ ରୁହ, ମୋ ଝିଅଟା କେତେ ବେଳୁ କାନ୍ଦିଲାଣି ତା କଥା ଟିକେ ବୁଝେ ।

ନମିତା ତାକୁ କ'ଣ ଚିନୁ ଗୁଡି ଦେଲା ନେଇଁ ।

ହର ମିନୁ ! ଏଠିକି ଆଇଲୁ ମାଆ ।

ନମିତା : ଯାଉନଉ, ଯା ।

ହର ତୁ ଗଲୁ ଚିନୁକୁ ଡାକି ଦବୁ ।

ମିନୁ ସିଏ ଆସିବ ନେଇଁ ।

ହର ତୁ ଯାଇକି କହ ବାପା ଡାକୁଚନ୍ତି । ଯଦି ସିଏ ନଆସେ ମୁଁ ତା କଥା ବୁଝିବି ।

ମିନୁ ଭାଇ ! ଭାଇ ! ଭାଇ ତତେ ବାପା ଡାକୁଚନ୍ତି । (ଡାକି ଡାକି ବାହାରକୁ ଗଲା)

ନମିତା ଏ ଛୁଆଙ୍କ ଅଳି ବୁଝିବା ଭାରି କଷ୍ଟ ।

ହର ଅଳି, ଅଝଟ ନବୁଝିଲେ ମାଆ ହବ କେମିତି ?

ନମିତା କିଛି ନବୁଝି ତମେ ବାପା ହେଇଚ କେମିତି ?

ହର ତମକୁ ବଜେଇଲେ ମୁଁ ବୁଝିବି ନା ।

ନମିତା ଅଭାବ ଅସୁବିଧା ଭିତରେ ପିଲାଙ୍କ ଅଳି ଅଝଟ ଆଉ ସହି ହେଉ ନାହିଁ ।

ହର ତୁମର ଏ ସୁନ୍ଦର ମୁହଁଟିକୁ ଦେଖିଲେ ଅଭାବ ଅଛି ବୋଲି କିଏ କହିବ ?

ନମିତା କ'ଣ ଯେ ତୁମେ କୁହ ?

ହର ଏଇଠିକି ଟିକେ ଆସିଲ ।

ଆନଂଦ ଚଂଦ୍ର ପତି

ନମିତା ଦିନକୁ ଦିନ ତମେ କ'ଣ ପିଲା ହେଇ ଯାଉଚ ? ମୋ ମୁହଁକୁ ଏମିତି କଟମଟ କରି ଚାହିଁଚ କ'ଣ ?

ହର ସୁନ୍ଦର ମୁହଁର ଆକର୍ଷଣ ଅନେକ । ତାର ରଙ୍ଗ ପ୍ରତି ଦିନ, ପ୍ରତି ମୁହୂର୍ତ୍ତରେ ବଦଳୁଥାଏ । ଏଇ ରଙ୍ଗ ବଦଳ ଦେଖିବାକୁ ଭାରି ଭଲ ଲାଗେ ।

ନମିତା ସେ ଟେକା ଟେକି କଥା କହି ମତେ ଭୁଲାଇ ଦେବାକୁ ଚେଷ୍ଟା କରନା । ମତେ କଥା ଦିଅ, ଆର ମାସରେ ମତେ ଖଣ୍ଡେ ଭଲ ଶାଢ଼ି କିଣି ଦବ । ଭଲ ପେଡି ଶାଢ଼ି ବୋଲି ମୋର ଯୋଉ ଖଣ୍ଡକ ପେଡି ଶାଢ଼ି ଅଛି ଏଠି ସେମିତିଆ ଶାଢ଼ି ସମସ୍ତେ ନିତି ପିନ୍ଧା କରୁଚନ୍ତି ।

ହର ଅସୁନ୍ଦରୀମାନେ ସୁନ୍ଦରୀ ସାଜିବାକୁ ଭଲ, ଭଲ ଶାଢ଼ି, ଦାମି ଗହଣା, ସ୍ନୋ ପାଉଡର ପିନ୍ଧନ୍ତି । ତାଙ୍କର ସେ ସୁନ୍ଦର ପଣ ତାଙ୍କ ଦେହର ନୁହଁ ତାଙ୍କ ପୋଷାକର । ସୁନ୍ଦର ଦେହକୁ ଦାମି ଅଦାମି ସବୁ ଶାଢ଼ି ସୁନ୍ଦର ।

ନମିତା (ଠୋ ଠୋ ହୋଇ ହସିଲେ । ଖୁବ୍ ହସିଲେ) ତମକୁ ପାରିହବ ନେଇଁ । ଶାଢ଼ି ଖଣ୍ଡେ ଦେବାକୁ ପଡିବ ବୋଲି ସୁନ୍ଦରୀ ତାଲିକାରେ ମୋ ନାଆଁଟା ଲେଖିଦେଲ ? ହଁ, ଖର୍ଚ୍ଚକୁ ଏଡେଇବାକୁ ଦରକାର ହେଲେ ପୃଥିବୀର ମୁଁ ଶ୍ରେଷ୍ଠ ସୁନ୍ଦରୀ ବୋଲି କହିବାକୁ ତମେ ପଛେଇବ ନାହିଁ ।

ହର ସୌନ୍ଦର୍ଯ୍ୟ ଦେଖିବା ଜିନିଷରେ ନଥାଏ ନମି । ଥାଏ ଦେଖିବା ଲୋକର ଆଖିରେ । ମୋ ଆଖିରେ ତୁମେ ସବୁଠୁ ସୁନ୍ଦର । (ନମିତାଙ୍କ ନାକଟାକୁ ଧରି ପକାଇଲେ)

ନମିତା ଆଃ, ମରିଗଲି ! ଛାଡ ମୋ ନାକଟା ଛାଡ ।

ହର (ନାକଟାକୁ ଛାଡି ଦେଲେ)

ନମିତା ଓଃ, ଏଡେ ଜୋର୍‌ରେ ନାକଟାକୁ ଚିପି ଦେଲ ମତେ ଭାରି କାଟିଲା ।

ହର କାଟିଲା କ'ଣ ହେଲା ? ନାକଟା କ'ଣ ମାଗି ଆଣିଚକି ?

ନମିତା ତମର ଆଜି କ'ଣ ହେଇଚି ? ଆଜି ତମେ ଜଣେ ନୂଆ ମଣିଷ ପରି ଦେଖାଯାଉଚ । ହାତରେ ସେଇଟା କ'ଣ ?

ହର (ଅପ୍ରସ୍ତୁତ ହୋଇ) କାହିଁ ? ନାହିଁତ ? କିଛି ନାହିଁ ।
ନମିତା ସେଇଟା, ସେଇ ହାତରେ ମ । ଚିଠିଟେ ପରି ଦିଶୁଚି ।
ହର ହଁ, ଚିଠିଟେ ।
ନମିତା ଚିଠି କିଏ ଦେଇଚି ?
ହର ଗାଆଁରୁ ନନା ଦେଇଚନ୍ତି ।
ନମିତା : କ'ଣ ଲେଖିଚନ୍ତି ?
ହର : ନିଅ ପଢ଼ ।
ନମିତା ତମେ ପଢ଼ୁନ ।
ହର ମୁଁ ପଢ଼ିଚି ।
ନମିତା ମଲା, ଆଉ ଥରେ ପଢ଼ୁନା, ମୁଁ ଶୁଣିବି । ବୋଉଙ୍କ ଦେହପା ଭଲ ଅଛିତ ?
ହର ହଁ ।
ନମିତା ମୁଁ କ'ଣ ଏମିତି ଗୋଟିକି ଗୋଟି ପଚାରିବି ତମେ ଖାଲି ହଁ, ନାହିଁ କହୁଥିବ ?
ହର ସେଇଥି ପାଇଁତ ମୁଁ କହୁଚି ତମେ ଚିଠିଟା ପଢ଼ ।
ନମିତା ନା, ତମେ ପଢ଼ ।
ହର (ଚିଠିଟି ଫଟାଇ ପଢ଼ିଲେ । ଚିଠି ଭିତରେ ଦେବ ପ୍ରସନ୍ନଙ୍କ ମୁହଁ । ଚିଠିଟି ଦେବପ୍ରସନ୍ନଙ୍କ କଣ୍ଠରୁ ଶୁଭିଲା ।)
ହର !

ମୋର ଆଉ ବୋଉର ସ୍ନେହ ନେବୁ । ସାନବୋହୂଙ୍କୁ ଆଉ ଚିନୁ, ମିନୁଙ୍କୁ ମୋର ସ୍ନେହ ଦେବୁ । ଏଠାରେ ସମସ୍ତଙ୍କ ଦେହ ପା' ଭଲ ଅଛି । ପରମେଶ୍ୱର ତମ ସମସ୍ତଙ୍କୁ ସେଠାରେ ଭଲରେ ରଖି ଥାଆନ୍ତୁ । ଘରୁ ଅନେକ ଦିନ ହେଲା ଚାଉଳ ସରିଚି । ଖାଇବା କଥା ଯାହା ଯେମିତି, ବିଲ ବଛା କାମ ଆଗ । ଏବର୍ଷ ଆମ ଗାଆଁରେ ମୂଲିଆ ମଜୁରୀ ତିରିଶ ଟଙ୍କା । ସମସ୍ତଙ୍କର ବିଲ ବଛା ଅଧାଅଧି ହେଲାଣି । ଆମର ବିଲବଛା ପାଇଁ ଷାଠିଏ/ସତୁରୀ ମୂଲିଆରୁ କମ୍ ଲାଗିବ ନେଇଁ । ମୁଁ ଯୋଉଠୁ ଧାର ଉଧାର ଆଣିଚି କାହାକୁତ ଏଯାଏ ଶୁଝି ପାରି ନାହିଁ । ଆଉ କୋଉ ମୁହଁରେସେମାନଙ୍କ ଆଗରେ ଠିଆ

ହେବି ? ତୁ ଢୋତି ବାହାଘରକୁ ମୁଣ୍ଡରେ ମୁଣ୍ଡେ ଧାର କରଛ ମୁଣ୍ଡେଇଚୁ । ଆଉ କୋଉଠୁ ଆଣିବୁ ? ଶହେ ନୁହଁ କି ଦୁଇ ଶହ କି ହଜାର ଟଙ୍କା ନୁହଁ ବିଲ ବନ୍ଧା ପେଇଁ ଦି'ହଜାର ଟଙ୍କା ଲାଗିବ । ମୁଁ ଏକୁଟିଆ ବିଲ ବାନ୍ଧୁଚି । ଦି'ମାସ ଲାଗିବ । ସେତେ ବେଳକୁ ବିଲରେ ଧାନ ପାଚିବା ଆରମ୍ଭ ହେବଣି । ଏମିତି ବିଲ ବାନ୍ଧିବା ଯାହା, ବିଲ ଅବନ୍ଧା ରହିବା ସେଇଆ ।

ଇତି
ତୋର ନନା
ଦେବପ୍ରସନ୍ନ

(ଚିଠି ପଢ଼ି ସାରିବା ବେଳକୁ ହର ପ୍ରସନ୍ନଙ୍କ ଆଖିରେ ଲୁହ ଓ ଛାତିରେ କୋହ ଆସି ଯାଇଥିଲା । ଚିଠି ପଢ଼ି ସାରି ଲୁଗାରେ ମୁହଁ ପୋଛି ନମିତାଙ୍କ ମୁହଁକୁ ଚାହିଁଲେ । ନମିତାଙ୍କ ମୁହଁ ଓ ଆଖି ଦୁଃଖରେ ଥମ୍ ଥମ୍ ଦେଖାଯାଉଥିଲା । ମିନୁ ଦଉଡି ଦଉଡି ପଶି ଆସି ହର ପ୍ରସନ୍ନଙ୍କୁ ହଲାଇ ଦେଲା)

ମିନୁ   ବାପା ! ବାପାମ ! ନନା ଆସିଲା ନେଇଁ ।

ହର   (ପ୍ରକୃତିସ୍ଥ ହୋଇ) କ'ଣ କହିଲୁ ମାଆ ?

ମିନୁ   ନନା କଇଲା - ଯା ଆଉ ଗୋଟେ କାଗଜ ଆଣିବୁ, ତୋ ପେଇଁ ଗୁଡି କରି ଦେବି ।

ହର   କାଗଜ ନବୁ ?

ମିନୁ   ବାପା ! ତମେ ବୋଉକୁ ମାଇଲ କି ? ବୋଉ କାଇଁକି କାନ୍ଦୁଚି ?

ନମିତା   (ଲୁହ ପୋଛି କାନ୍ଦ କାନ୍ଦ କଣ୍ଠରେ) ନାଇଁ ମିନୁ ! କିଛି ନାହିଁ ।

ମିନୁ :   ତୋ ଆଖିରୁ ଲୁହ ବହୁଚି ।

ନମିତା :   ମୋ ଆଖିରେ ଗୋଟେ ଗୁଣ୍ଡ ପଡିଗଲା । ତୁ ଯା' ନନା ସାଙ୍ଗରେ ଖେଳିବୁ ଯା ।

ମିନୁ   ବାପା ! ମତେ ଗୋଟେ କାଗଜ ଦିଅ ।

ହର :   ରହ, ମୁଁ ଦଉଚି ।
(କାଗଜ ଖୋଜିବା ଉପକ୍ରମ କଲେ)

ମିନୁ   ତମ ହାତରେ ଯୋଉ କାଗଜଟା ଧରିଚ ମତେ ଦଉନା ।
(ମିନୁ ବାପାଙ୍କ ହାତରୁ ଚିଠିଟା ଝାଂପି ନେଇଗଲା)

ଆନଂଦ ଚଂଦ୍ର ପହି

| | |
|---|---|
| ହର | ମିନୁ ! ଆରେ ମିନୁ ! ଆରେ କାଗଜଟା ନେଏନା । |
| ମିନୁ | (ଖଣ୍ଡେ ଦୂରରେ ଠିଆ ହୋଇ) ବାପା ଟାଥା, ଟାଥା, ବୋଉ ଟାଥା ଟାଥା । |
| ହର | ମିନୁ ! ଏମିନୁ ! ସେ ଚିଠିଟା କୁଆଡେ ନୋଉଚୁ ? କ'ଣ କରିବୁ ? |
| ମିନୁ | ନନାକୁ ଦେବି ଗୁଡି ତିଆରି କରିଦେବ । ଖେଳିବି । |
| ନମିତା | ଏ ମିନୁ ! ମିନୁ ! ଶୁଣ ମାଆ ! ମୁଁ ଆଉ ଗୋଟେ କାଗଜ ଦଉଚି ନେ । ସେଇଟା ପରା ବଡ ବାପା ପଠେଇଚନ୍ତି । ସେଟା କାଗଜ ନୁହଁ ଚିଠି । ଏ ମିନୁ ! |
| ହର | ସିଏ କ'ଣ ଆଉ ଏଠି ଅଛି ଯେ ତମେ ତାକୁ ଏତେ କଥା କହୁଚ ? ଚିଠିଟା ଆମେପଢ଼ି ସାରିଚେ । ସିଏ ନୋଉ । ସେଟା ଆଉ କ'ଣ ହବ ? |
| ନମିତା | ତମେ ମୋ ହାତର ସୁନା ଚୁଡି ଚାରିପଟକୁ ଏମିତି ଚାହିଁଚ କାହିଁକି ? |
| ହର | କାଇଁ, ନାଇଁତ ? |
| ନମିତା | ସବୁତ ଯାଇଚି, ଏ ସୁନାଚୁଡି ଚାରିପଟ କାହିଁକି ରହିବ ? ନିଅ ଏତକ ବିକିଗାଆଁକୁ ନନାଙ୍କ ପାଖକୁ ଟଙ୍କା ପଠା । |
| ହର | ନମି ! ତମେ ସତେ କେତେ ସୁନ୍ଦର ! |
| ନମିତା | ଫେର୍ ସେଇ ଟେକା ଟେକି କଥା ଆରମ୍ଭ କଲ । |
| ହର | ନା ନମି ! ତମ ମନ ଭିତରଟା ସତରେ ଖୁବ୍ ସୁନ୍ଦର । |
| ନମିତା | ନିଅ । |
| | (ନମିତା ନିଜ ହାତରୁ ସୁନାଚୁଡି ଚାରିପଟ ଉତାରି ହରପ୍ରସନ୍ନଙ୍କ ହାତରେ ଥୋଇବା ବେଳେ ଉଭୟଙ୍କ ଆଖି ଛଳ ଛଳ ହୋଇ ଆସୁଥିଲା ।) |



ଆନଂଦ ଚଂଦ୍ର ପହି



ଆନଂଦ ଚଂଦ୍ର ପହିଙ୍କ ଜନ୍ମ : ୧୯୪୬ ମସିହା, ଏପ୍ରିଲ୍ ୧୧ ତାରିଖ । ଗ୍ରାମ : ନିହଲପ୍ରସାଦ, ଢେଙ୍କାନାଳ । ଶ୍ରୀ ପହି ଜଣେ ବିଶିଷ୍ଟ ଗାଳ୍ପିକ ଓ ପ୍ରତିଷ୍ଠିତ ନାଟ୍ୟକାର ।

ଶ୍ରୀ ପହିଙ୍କ ଦ୍ୱାରା ରଚିତ କ୍ଷୁଦ୍ରଗଳ୍ପ ପୁସ୍ତକ :

☐ ଧୂଳିଝଡ଼ ☐ ମୁହଁ ସଂଙ୍ଗ
☐ ଅନେକ ମୁହଁ ☐ ଅନ୍ୟ ଅରଣ୍ୟ
☐ ଷାଚ୍ଯୁ ☐ ଚରିତ୍ର ଚିହ୍ନାର

ଆନଂଦ ଚଂଦ୍ର ପହିଙ୍କ ଦ୍ୱାରା ରଚିତ ବେତାର, ଦୂରଦର୍ଶନ ଓ ମଞ୍ଚ ନାଟକ :

☐ ଅନ୍ୟ ଏକ ସିଦ୍ଧାର୍ଥ (ସର୍ବ ଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗିତା ୧୯୯୫-୯୬ରେ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ)
☐ ଭାଙ୍ଗି ପଡୁଥିବା ଭୂମି (ସର୍ବଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗିତା ୧୯୯୨-୯୩ରେ ଦ୍ୱିତୀୟ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ)
☐ ରେଖାଚିତ୍ର (ପୁସ୍ତକ ଭାବେ ପ୍ରକାଶିତ) (ଆକାଶବାଣୀ ବାର୍ଷିକ ପୁରସ୍କାର ପ୍ରଦାନ ଉତ୍ସବ ୧୯୯୨ରେ ମେରିଟ୍ ସାର୍ଟିଫିକେଟ୍ ପ୍ରାପ୍ତ)
☐ ହଜିଯାଉଥିବା ମଣିଷ - (ପୁସ୍ତକ ଭାବେ ପ୍ରକାଶିତ)
☐ ପ୍ରତୀକ୍ଷାରେ ପରୀକ୍ଷିତ - (ପୁସ୍ତକ ଭାବେ ପ୍ରକାଶିତ)
☐ ଦୁଇ ଦିଗନ୍ତ - (ପୁସ୍ତକ ଭାବେ ପ୍ରକାଶିତ)
☐ ଆକାଶର ରଙ୍ଗ - (ପୁସ୍ତକ ଭାବେ ପ୍ରକାଶିତ)
☐ ଡର - (ପୁସ୍ତକ ଭାବେ ପ୍ରକାଶିତ)

☐ ଆଲୋକର ଅନ୍ଧକାର
☐ ଅନ୍ୟ ଅରଣ୍ୟ
☐ ଯନ୍ତ୍ରା
☐ ନୀଳକଣ୍ଠ
☐ ଖାନ୍‌ଦାନ୍‌ଦାସ
☐ ଚିଠି
☐ ଆକ୍ସିଡେଣ୍ଟ
☐ ବୁଢ଼ିଆଣୀ ଜାଲ
☐ ଶୋଷ
☐ ଆନୁଆଲ୍ ଫଙ୍କସନ୍
☐ ଅଚିହ୍ନା ଅପରାଧ
☐ ନୂଆ ସକାଳ
☐ ଅମୃହାଁ ଦେଉଳ
☐ ମୁହଁ ସଂଙ୍ଗ
☐ କାଲି ଆଜି କାଲି
☐ ଆଗାମୀ ସୂର୍ଯ୍ୟୋଦୟ
☐ ପାଲଟା ସୁଅ
☐ କୁଣିଆ ଝମେଲା
☐ ଝିଅଦେଖା
☐ ରତୁ
☐ ସୂର୍ଯ୍ୟପରାଗ
☐ ଦୃଷ୍ଟି
☐ ଝଡ଼ଗ୍ରସ୍ତ ଦୁଇଟି ଫୁଲ
☐ ଅବୁଝା ରାହା